ପ୍ରକାଶକ :

ଅଭିରାମ ମହାପାତ୍ର
ଗ୍ର ନ୍ଥ ମ ନ୍ଦି ର
ବିନୋଦବିହାରୀ, କଟକ-୨
ଶାଖା : ମେନ୍‌ରୋଡ୍‌, ବ୍ରହ୍ମପୁର-୧

ମୁଦ୍ରକ :

ଜୟରାମ ମହାପାତ୍ର
ଗ୍ର ନ୍ଥ ପ୍ର କା ଶି ନୀ
ସୁତାହାଟ, କଟକ-୧

ପ୍ରଥମ ମୁଦ୍ରଣ : ୧୯୭୮
ପୁନର୍ମୁଦ୍ରଣ : ୧୯୮୨

ମୂଲ୍ୟ : ଟ ୧୨-୫୦
ସାଦା ବନ୍ଧେଇ : ଟ ୧୦-୦୦

ଶ୍ରୀମତୀ ନନ୍ଦିନୀ ଶତପଥୀ

ସହୃଦୟାସୁ

ଓ

ଶ୍ରୀଯୁକ୍ତ ଦେବେନ୍ଦ୍ର ଶତପଥୀ

ସୁହୃଦ୍‌ବରେଷୁ

ମହାପାତ୍ର ନୀଳମଣି ସାହୁ

ଭୁବନେଶ୍ୱର

ଜନ୍ମାଷ୍ଟମୀ, ୧୯୭୮

## ସାମାନ୍ୟକଥନ

ଓଡ଼ିଶାର ବିଖ୍ୟାତ ପ୍ରକାଶନସଂସ୍ଥା ଗ୍ରନ୍ଥମନ୍ଦିର, କଟକ, ମୋର କେତେକ ଗଳ୍ପକୁ ଏକତ୍ର କରି "ଯାଦେବୀ ମମ-ଗୃହେଷୁ" ନାମରେ ଏହି ସଂକଳନଟି ପ୍ରକାଶ କରୁଛନ୍ତି । ଏହା ନିଶ୍ଚୟ ମୋ ପକ୍ଷରେ ଖୁବ୍ ଆନନ୍ଦର ବିଷୟ । ଆହୁରି ଆନନ୍ଦର କଥା ଯେ, ବିଶିଷ୍ଟ ଶିଳ୍ପୀ ଶ୍ରୀଯୁକ୍ତ ଅସୀମ ବସୁଙ୍କ ତୂଳିକାସ୍ପର୍ଶରେ ଏହାର ପ୍ରଚ୍ଛଦପଟ ସୁଶୋଭିତ ହୋଇପାରିଛି । ଏହି ଗଳ୍ପ-ଗୁଡ଼ିକ ବିଭିନ୍ନ ସମୟରେ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା ଓ ବହୁ ପାଠକ-ପାଠିକାଙ୍କୁ ଆମୋଦ ଦେଇଥିଲା । ସତକୁସତ, ଏହି ଗଳ୍ପଗୁଡ଼ିକ ମୁଖ୍ୟତଃ ଆମୋଦଧର୍ମୀ, ମାତ୍ର ଏହି ଆମୋଦଦାୟକତା ଏଗୁଡ଼ିକର ଶେଷ ଅର୍ଥ ନୁହେଁ । ଭାଷା ଓ ଶୈଳୀରେ କିଂଚିତ୍ ଚଟୁଳ ରସିକତା, କିଂଚିତ୍ ପରିହାସ-ପରାୟଣତା ଏବଂ ଏପରିକି ସାମାନ୍ୟ ଲଘୁମନସ୍କତା ଭିତରେ ବି ଜୀବନ ଓ ସମାଜର କିଛି ବିଶେଷ ଅର୍ଥପୂର୍ଣ୍ଣ ପରିବେଶ, କିଛି ବିଶେଷ ଧରଣର ବ୍ୟକ୍ତିତ୍ୱ ପ୍ରକଟନ ଏବଂ କିଛି ସବିଶେଷ ମିଶ୍ର-ଅନୁଭୂତି, ଏହି ଗଳ୍ପଗୁଡ଼ିକରୁ ମିଳୁଛି ବୋଲି ବହୁ ସହୃଦୟ ବିଦଗ୍ଧ ପାଠକ-ପାଠିକା ମତ ପ୍ରକାଶ କରିଛନ୍ତି । ସେଥିପାଇଁ ମୋର ଏହି ଗଳ୍ପସଂକଳନଟି ମଧ୍ୟ ମୋର ଅନ୍ୟାନ୍ୟ ଗଳ୍ପ-ସଂକଳନଠାରୁ ବିଷୟବସ୍ତୁ ଓ ରଚନାଶୈଳୀରେ ବହୁ ପୃଥକ୍ତା ଦାବୀକରେ ।

ପରିଶେଷରେ ମୋର ପ୍ରିୟ ପାଠକ-ପାଠିକାଙ୍କର ମଙ୍ଗଳ କାମନା କରି ସେମାନଙ୍କ ଅବସର ସମୟକୁ କିଛି ପରିମାଣରେ ସରସ ଓ ସାର୍ଥକ କରିବା କାମନାରେ ଏହି ସଂକଳନଟି ସବିନୟେ ସେମାନଙ୍କ ହାତକୁ ବଢ଼ାଇଦେଉଛି ।

ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ
୧୯୭୮

**ମହାପାତ୍ର ନୀଳମଣି ସାହୁ**
ଭୁବନେଶ୍ୱର

# ସୂଚୀପତ୍ର



□□□

# ଯା ଦେବୀ ମମ ଗୃହେଷୁ

ଗତ କାଲି ରାତି ପ୍ରାୟ ସାଢ଼େ ଆଠଟା ହେବ । ମୁଁ ଅକସ୍ମାତ୍ ମୋର ଶୋଇବା ଘରେ ଖଟ ଉପରେ ଗଡ଼ୁଥିଲି । ଯଦିଓ ସେଇଟା ମୋର ବିଛଣା ଧରିବା ବେଳ ନୁହେଁ—କିନ୍ତୁ ସେଦିନ ମୋତେ ବିଛଣାଟାଇ ଧରିରଖିଥିଲା । କାରଣ ସେଦିନ ସବୁ ପୁରୁଣା ଶେଯ ଭଙ୍ଗାଯାଇ ଆଉ କିଛି ତୁଳା ମିଶାଇ ସବୁକୁ ସୁନ୍ଦର ଭାବେ ଭଣିକ୍ରିଣି ମୋ ଘରେ ନୂଆ ଶେଯଗୁଡ଼ିଏ ତିଆରି କରାଇଥିଲେ ମୋର ପତ୍ନୀ ଶ୍ରୀମତୀ ଶୈବାଳିନୀ । ମୋ ଖଟରେ ସେହି ନବ ନିର୍ମିତ ନରମ ଶେଯ ଉପରେ ଗୋଟିଏ ସୁନ୍ଦର ଶୁଭ୍ର ବିଛଣା ଚଦର ମଧ୍ୟ ପରାଯାଇଥିଲା ଓ ତା' ଦେହରେ ବେଶ୍ କାରୁକାର୍ଯ୍ୟହୋଇ ଧାଡ଼ିଟିଏ ଲେଖା ବୁଣା ଯାଇଥିଲା ଗୋଲାପି ସୂତାରେ—'ଗହନ ନିଦ ଆଉ ଗୋଲାପୀ ସପନ' ।

ଏ ସୁଯୋଗ ଛାଡ଼ିବାର ନୁହେଁ । ବିଛଣାଟିର ଏହି ଦୁଗ୍ଧ ଫେନନିଭ ନରମପଣ ଆଉ ମଲ୍ଲି ଫୁଲିଆ ଶୁଭ୍ରତା ଆସନ୍ତାକାଲି ହୁଏତ ଆଉ ରହିବ ନାହିଁ । ହଁ ତା' ଉପରେ ପୁଣି କିଏ କେତୋଟି ବୁନ୍ଦା ଇଉଡ଼ିକୋଲନ୍ ମଧ୍ୟ ଛିଞ୍ଚି ଦେଇଥିଲା । କୋଠରିଟି ଭିତରେ ନିଶ୍ଚିନ୍ତ ନିଦଟିଏ ଲାଗି ବେଶ୍ ଗୋଟାଏ ମାନସିକ ଆମେଜ ସୃଷ୍ଟି ହୋଇଯାଇଥିଲା ।

ପ୍ରକାଶ ଥାଉକି, ମୁଁ ନିଜେ ଜଣେ ପଶୁ ଡାକ୍ତର । ମାତ୍ର ଚାକିରି ନ କରି ଗୋଟିଏ ନାତି ବିରାଟ ପଶୁ-ପକ୍ଷୀ ମତ୍ସ୍ୟ ପାଳନ କେନ୍ଦ୍ରର ମାଲିକ ଓ ପରିଚାଳକ ରୂପେ ଆଜି ଏ ସହରରେ ନିଜକୁ ସୁପ୍ରତିଷ୍ଠିତ କରିପାରିଛି । ସହରଠାରୁ ଅଳ୍ପ ଦୂରରେ ମାନେ ଚାରି ପାଞ୍ଚ କିଲୋମିଟର ଦୂରରେ ପ୍ରାୟ ବାର ଏକର ଜମିରେ ମୋର ଏହି ପ୍ରତିଷ୍ଠାନଟି କାର୍ଯ୍ୟକରୁଛି । ଛଅଟି ଜର୍ସି ଗାଈ, ଚାରୋଟି ହରିଆନା ଓ ଛଅଟି ବିଭିନ୍ନ ଧରଣର ସଙ୍କର ଗାଈଙ୍କ ବ୍ୟତୀତ ଛଅଟି ମଇଁଷି, ଶତାଧିକ ଛେଳି ମେଣ୍ଢା ଆଦି ପଶୁ ଏବଂ ସହସ୍ରାଧିକ ଗୈରିକପକ୍ଷ ଆର. ଆଇ. ଆର. ଶୁଭ୍ର ପକ୍ଷ ଲେଗହର୍ଣ୍ଣ ଓ କୃଷ୍ଣ ପକ୍ଷ ଅଷ୍ଟ୍ରେଲିଅନ କୁକୁଡ଼ାଙ୍କ ଦାୟିତ୍ୱ ନେବାରେ ଏବଂ ସେମାନଙ୍କ ପ୍ରସୂତ ଦ୍ରବ୍ୟାଦିର କ୍ରୟବିକ୍ରୟ କାରବାରରେ ମାତିଥିବାରେ, ମୋର ଦିନ ଓ ରାତି କେତେବେଳେ ଆସେ ଓ କେତେବେଳେ ଯାଏ—ତାହା ମୋତେ ପ୍ରକୃତରେ ଜଣାନଥାଏ । ତ' ଛଡ଼ା ନିକଟରେ ଛୋଟ ପୋଖରୀଟିରେ ମତ୍ସ୍ୟ ଚାଷ ବିଭାଗ ମଧ୍ୟ ଖୋଲିଛି । ଏସବୁ କାରବାର ତଦାରଖ କରିବାଲାଗି ମୋ ଛଡ଼ା ଆଉ କିଏ ବା ଅଛି ? ତା'ଛଡ଼ା ଏସବୁ ହେଲା ପଶୁ ପକ୍ଷୀଙ୍କ ବ୍ୟାପାର । ଦିନ କାଳ ଯେମିତି ହେଲାଣି ଏବଂ ଆମ୍ଭମାନଙ୍କ ଭିତରେ ମାନବାସୁରତା ଯେମିତି ବଢ଼ିଗଲାଣି—ସେଥିରେ ପୁଣି ପଶୁ ପକ୍ଷୀଙ୍କ ସମ୍ପୂର୍ଣ୍ଣ ମାନବୀୟ ବିଜ୍ଞାନ

ପଛିତରେ ବଞ୍ଚାଇ ରଖିବାକୁ ପଡ଼ୁଛି । ଫଳରେ ସେମାନଙ୍କ ଭିତରେ ରୋଗ ବୈରାଗ ତ ସବୁଦିନେ ଲାଗିରହିଛି ଏବଂ ସେଥିଲାଗି ଗୋଟିଏ ଶ୍ରେଷ୍ଠ ଡାକ୍ତରଖାନା ମଧ୍ୟ ମୋର ଫାର୍ମରେ ଖୋଲାଯାଇଛି । ଏ ସବୁଥିରେ ମୋତେ ଦିନ ରାତି ଖଟିବାକୁ ପଡ଼େ । ଏତେ ସୁନ୍ଦର ବିଛଣାରେ ଆରାମ କରି ଶୋଇବା ମୋ ଭାଗ୍ୟରେ ବର୍ଷକେ ଯେତେଥର ଘଟେ, ତାହା ହାତରେ ଗଣିହୋଇଯିବ । ବେଳେବେଳେ ରାତିଟା କଟିଯାଏ ଫାର୍ମରେ, ମୁକ୍ତ ଆକାଶ ତଳେ ଗୋଟିଏ ଫିଟା ଖଟରେ ଶରୀରକୁ ଲମ୍ବାଇ । ପାଖ ଆଖରେ ଗୋବର ଗନ୍ଧ, ମୂତ ଗନ୍ଧ—କୁକୁଡ଼ାମାନଙ୍କର ଅନବରତ କଳକଳ ରଡ଼ି—ଛେଳି ମେଣ୍ଢାଙ୍କର ମୁଖ ନିଃସୃତ ମେଁ ମେଁ ଭେଁ ଭେଁ—ଗୋବତ୍ସମାନଙ୍କର ମାତୃପୟଃ ପିପାସୀ କାତର କଣ୍ଠର କରୁଣ ମିନତି ଧ୍ୱନି—ଏବଂ ମୋର ଠିକ୍ ପାଖରେ ଆଉ ଗୋଟିଏ ଖଟିଆରେ ଶୋଇ ଶୋଇ ଏଇ ସବୁ ପଶୁ ପକ୍ଷୀଙ୍କ ବ୍ୟକ୍ତିଗତ ସ୍ୱଭାବ ଚରିତ୍ର, ପ୍ରକୃତି ଓ ଦୈନନ୍ଦିନ କାଣ୍ଡକାରଖାନା ବିଷୟରେ ଅନବରତ ଗପୁଥିବା ମୋର ମୁଖ୍ୟ ପ୍ରାଣୀଶାଳା ତତ୍ତ୍ୱାବଧାରକ ଗୋପାଳ ଶିରୋମଣି ଶ୍ରୀଯୁକ୍ତ କହ୍ନାଇକିଶୋର ବେହେରାଙ୍କର ସେହିସବୁ ଅମାନବିକ ପ୍ରାଣୀମାନଙ୍କ ଉଦ୍ଦେଶ୍ୟରେ ନାନା ପ୍ରକାର ଜାନ୍ତବ କ୍ରୀଡ଼ାଟ । ତଥାପି ସେଠି ନିଦ ହୋଇଯାଏ । ପଶୁ ପକ୍ଷୀଙ୍କ ଚିକିତ୍ସା ବିଜ୍ଞାନରେ ଉପାଧି ପ୍ରାପ୍ତ ଡାକ୍ତର ମୁଁ । ଏଣେ ପୁଣି ପଶୁ ପକ୍ଷୀଙ୍କୁ ନେଇ ମୋର ବ୍ୟବସାୟ । ସେହିମାନେ ହିଁ ମୋର ଜୀବିକାର୍ଜନର ଉପାୟ । ସେହିମାନଙ୍କ ପ୍ରଦତ୍ତ ଆୟରେ ସହରରେ ମୋର ଏତେ ସୁନ୍ଦର କୋଠା—ଉଦ୍ୟାନ—କାର୍—ଏବଂ ଅତ୍ୟାଧୁନିକ ବିଳାସ-ବ୍ୟସନର ଯାନ ସରଞ୍ଜାମ ପରିପୂର୍ଣ୍ଣ ମୋର ସଂସାର । ଏହି ଆୟକୁ ସମ୍ବଳ କରି ମୋର ପତ୍ନୀ ଶ୍ରୀମତୀ ଶୈବାଳିନୀ ମହାପାତ୍ର ବି. ଏ. ଅନର୍ସ ଡିଷ୍ଟ୍ରିକ୍ଟ ସହରର ସାମାଜିକ ପ୍ରତିଷ୍ଠା—ନାରୀ ଜାଗରଣରେ ନେତୃତ୍ୱ—ଏବଂ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନରେ କର୍ତ୍ତ୍ରୀତ୍ୱ । ଅଥଚ ସେହି ମହୀୟସୀ ରମଣୀଙ୍କଠାରୁ ମୋତେ ସବୁ ଦିନେ ମଧୁର ପାଶବିକ ଭର୍ତ୍ସନା ଶୁଣିବାକୁ ପଡ଼ିଥାଏ । ଶୈବାଳିନୀ ବାରମ୍ବାର ତାଙ୍କର ନିକଟତମ ସୁନ୍ଦରୀ ପୁଚୁଡ଼ି ବନ୍ଧୁମାନଙ୍କ ଆଗରେ ମୋ ବିରୁଦ୍ଧରେ ଅଭିଯୋଗ କରି କହନ୍ତି—ଆପଣମାନଙ୍କର ଡକ୍ଟର ମହାପାତ୍ର ପୂର୍ବ ଜନ୍ମରେ ଗୋ କିମ୍ବା ମହିଷାଦି ପଶୁ ଥିଲେ ନିଶ୍ଚୟ ।

ଏବଂ ତା' ମଧ୍ୟ ହୋଇଥାଇପାରେ । ମୁଁ ତାଙ୍କର ସେ ମନ୍ତବ୍ୟର କୌଣସି ପ୍ରତିବାଦ କରେନାହିଁ କିମ୍ବା ସେଥିରେ ମଧ୍ୟ ଅପମାନିତ ବୋଧ କରେନାହିଁ । କାରଣ ମୋର ଧାରଣା ଶ୍ରୀମତୀ ଶୈବାଳିନୀ ମହାପାତ୍ରଙ୍କ ଭଳି ରମଣୀ-ରତ୍ନଙ୍କ ସଙ୍ଗେ ଯେ ପୁରୁଷ ନିର୍ଦ୍ୱନ୍ଦ୍ୱରେ ପଚିଶି ବର୍ଷ କଟାଇସାରିଲେଣି—ସେ ଜଣେ ମହାତ୍ମା । କିନ୍ତୁ ଗୋରୁ କିମ୍ବା ମହିଷ ରୂପରେ ନିଶ୍ଚୟ ଏ ଧରା ଧାମରେ ବିଚରଣ କରୁଛନ୍ତି । ପୁଣି ଆଉ ଗୋଟିଏ ଦୃଷ୍ଟିରୁ ମଧ୍ୟ ମୋର ପରମାରାଧ୍ୟା ପତ୍ନୀ ଶ୍ରୀମତୀ ଶୈବାଳିନୀଙ୍କ ମନ୍ତବ୍ୟକୁ ସମର୍ଥନ କରାଯାଇପାରେ । କାରଣ—ଏ ସହର ଓ ଆଖପାଖର ମଣିଷମାନେ କେବଳ ପଶୁମାନଙ୍କ ସମ୍ପର୍କ ଦେଇ ମୋତେ ସ୍ମରଣ କରିଥାନ୍ତି । କହିବା ବାହୁଲ୍ୟ—ମୁଁ ଜଣେ ବିଶିଷ୍ଟ ପଶୁ ପ୍ରିୟ ଡାକ୍ତର । ଲୋକେ ଡାକ୍ତର ଘନଶ୍ୟାମ

ମହାପାପକୁ ସ୍ମରଣ କରନ୍ତି ସେତିକବେଳେ ଯେତେବେଳେ ସେମାନେ କୌଣସି ପାଶବିକ ସଙ୍କଟରେ ପଡ଼ିଯାନ୍ତି । ମାତ୍ର ମୋର ପତ୍ନୀ ଶୈବାଳିନୀ ଦେବୀ ଏ ସହରରେ ଖୁବ୍ ପରିଚିତା ଓ ସମ୍ମାନିତା ଅଟନ୍ତି ସମ୍ପୂର୍ଣ୍ଣ ମାନବୀୟ କାରଣରୁ । ରୂପ, ଗୁଣ, ବ୍ୟବହାର, ବ୍ୟକ୍ତିତ୍ୱ, ନେତୃତ୍ୱ, ବକ୍ତୃତା ଓ ପାର୍ଟି, ପିକ୍‌ନିକ୍ ଆସରାଦି ବ୍ୟାପାରରେ ଏହି ତେଜୋବତୀ ରମଣୀ ଏ ସହରରେ ଅନନ୍ୟା ଏବଂ କହିବା ବାହୁଲ୍ୟ ମାତ୍ର ଯେ ମୁଁ ଏଭଳି ନାରୀ ରତ୍ନ ପାଇ ନିଜକୁ ଧନ୍ୟ ମନେକରିବା ଛଡ଼ା ନାନ୍ୟ ପନ୍ଥା ବର୍ତ୍ତମାନ ଅଧ୍ୟାୟ । ତାଙ୍କ ତୁଳନାରେ ନିଜକୁ ପଶୁ ମନେକରିବା ମଧ୍ୟ ଗୋଟିଏ ସହଜସାଧ୍ୟ ମନୋବୃତ୍ତି ମୋ ପକ୍ଷରେ ।

କିନ୍ତୁ ଆଜିର ଏହି ବିଚ୍ଛିନ୍ନପର ଘଟଣାରୁ ଯାହା ମନେହେଉଛି—ମୋତେ ଆଜି ରାତିଟି ଗୋଶାଳାରେ ନକଟାଇ ମୋ ନିଜ ଶାଳାରେଇ କଟାଇବାକୁ ପଡ଼ିବ । ତା'—ବ୍ୟବସ୍ଥାଟି ମନ୍ଦ ନୁହେଁ । ତେଣୁ ଶୈବାଳିନୀ ବିଛଣାର ଏହି ଶୁଭ୍ର ନରମ ଶଯ୍ୟାଟି ଉପରେଇ ମୁଁ ଆରାମରେ ଗଡ଼ପଡ଼ ହେଉଥିଲି । ଏହି ସମୟରେ ହଠାତ୍ ଡ୍ରଇଂ ରୁମ୍‌ରେ ଟେଲିଫୋନ୍‌ଟି ବାଜିଉଠିଲା । ମୋତେ ଟେଲିଫୋନ୍ ପାଖକୁ ଯିବାକୁ ନଦେଇ ଶୈବାଳିନୀ ନିଜେ ଟେଲିଫୋନଟି ଧରିଲେ । ଶୋଇବା ଘରୁ ମୁଁ କିନ୍ତୁ କିଛି ଶୁଣି ପାରୁନଥିଲି—ତେଣୁ ଉତ୍କଣ୍ଠ ହୋଇରହିଲି । କେତୋଟି ମିନିଟ ପରେ ଶୈବାଳିନୀ ଦ୍ରୁତ ପଦକ୍ଷେପରେ ଗ୍ରୀବା ଚମକାଇ ମୋ ପାଖରେ ଆସି ପହଞ୍ଚିଲେ ।

ହେଇ ! ଶୁଣୁଚ ?

କଣ ?

କାଲି ଭୋର୍ ଗାଡ଼ିରେ ଆସି ପହଞ୍ଚୁଛନ୍ତି ସେମାନେ ।

କିଏ ?

ଶଙ୍କର ଆଉ ତାର ନବବଧୂ ।

ଶଙ୍କର ? କୋଉ ଶଙ୍କର ?

ମଲା ! ଶଙ୍କର ମ !

କୋଉ ଶଙ୍କର ମ ?

ଆରେ···ଶଙ୍କଅର୍ ।

ଆରେ ଆଚ୍ଛା କଥା—କୋଉ ଶଙ୍କର !

ତୁମ ମୁଣ୍ଡ ଠିକ୍ ଅଛି ତ ?

ମୁଁ ଅତଃପର ମୋର ମୁଣ୍ଡରେ ହାତମାରି ଦେଖିଲି ଯେ ତାହା ଠିକ୍ ସ୍ଥାନରେ ଅଛି— ଏବଂ ମୋର ବେକଟି ସେହି ମହାର୍ଘ ଅଙ୍ଗଟିକୁ ମୋର ହୃଦୟର ଏବଂ ଅନ୍ୟାଙ୍ଗମାନଙ୍କ ସହ

ଠିକ୍ ଯୋଡ଼ିକରି ରଖିଛି । ତେଣୁ ମୁଁ ବିନୟରେ କହିଲି—ମୋ ମୁଣ୍ଡର ଅସ୍ତିତ୍ୱ ସମ୍ବନ୍ଧେ ବୃଥା ମୁଣ୍ଡ ଖେଳାଅ ନାହିଁ । ମୋତେ କୁହ—ତୁମେ କୋଉ ଶଙ୍କର କଥା କହୁଛ !!

ଶୈବାଳିନୀ ଖେଙ୍କାରି ଉଠିଲେ—କେଇଟା ଶଙ୍କର ଅଛନ୍ତି କି ତୁମର ?

ଆମର ହୋଇ ଗୋଟିଏ ଶଙ୍କର ଥିଲେ ବି ସେ ଶଙ୍କର ତ ପେର୍ ମୋର ମନେ ପଡ଼ିବା ଉଚିତ !

ଶୈବାଳିନୀ ଥକ୍କା ହୋଇ ଠିଆହୋଇରହିଲେ । ମୁଁ ମଧ୍ୟ ତଦ୍ରୂପ ତାଙ୍କର କ୍ରୋଧଦୀପ୍ତ ମୁଖକୁ ନଚାହିଁ ଶବାସନ କଲାଭଳି ବିଛଣା ଉପରେ ନୀରବ ନିଷ୍ପନ୍ଦ ହୋଇ ପଡ଼ିରହିଲି । ଶଙ୍କରାଭରଣ ରାଗ ଏଇଠି ସମାପ୍ତ ହୋଇଗଲେ ଭଲ ହୁଅନ୍ତା । ମାତ୍ର ତାହା କଅଣ ମୋ ଭାଗ୍ୟରେ ଅଛି ? ଶୈବାଳିନୀ ମୋ ଉଦ୍ଦେଶ୍ୟରେ ଖୁବ୍ ଗମ୍ଭୀର ହୋଇ କହିଲେ— ଗୋରୁ ମଇଁଷି ଛେଳି ମେଣ୍ଢାଙ୍କ ନାମ ତ ତୁମର ଖୁବ୍ ମନେ ରହେ । ଶଙ୍କର ନାମ ବେଳକୁ ଯେତେ ଗୋଳମାଳ !

ହାତଯୋଡ଼ି ମୁଁ କହିଲି—ଦେଖ ! ରାଗ କର ନାହିଁ । ଅଜିର ଏହି ତୁମ ବିରଚିତ ମନୋରମ ବିଛଣାଟିର ମର୍ଯ୍ୟାଦା ରକ୍ଷା କରିବାକୁ ମୁଁ ଅତି ଆଗ୍ରହ ଆଉ ଆନନ୍ଦରେ ଅଧୀର ହୋଇ ପଡ଼ୁଛି । ତେଣୁ ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ । ମାତ୍ର କଥା ହେଉଛି—ଶଂସିତ ଏହି ଶଙ୍କର ନାମଟି ମୋର ଆଦୌ ଅପରିଚିତ ନୁହେଁ—ଏହା ମୋର ତ୍ରିକାଳ ସନ୍ଧ୍ୟାରେ ବରଂ ଏକ ସ୍ମରଣୀୟ ଓ ବରେଣ୍ୟ ଶ୍ରଦ୍ଧା ନାମ । ଏ ନାମ ଠାରୁ ପବିତ୍ର ନାମ ମୋ ପକ୍ଷରେ ଆଉ କିଛି ନାହିଁ । ଶିବ ପୁରାଣରୁ ମୁଁ ତାଙ୍କର ମହିମା ବିଷୟରେ ସମ୍ପୂର୍ଣ୍ଣ ଅବଗତ, ତା' ଛଡ଼ା ଆଦ୍ୟଶଙ୍କରାଚାର୍ଯ୍ୟଙ୍କ ବିଷୟରେ ମଧ୍ୟ ମୁଁ କିଛି କିଛି ଜାଣେ । ବିଶେଷତଃ ତାଙ୍କର ସେହି ମନୋରମ ଶ୍ଳୋକଟି—"କା ତବ କାନ୍ତା କସ୍ତେ ପୁତ୍ରଃ ? ସଂସାରୋଽୟମତୀବ ବିଚିତ୍ରଃ"—ଆଃ ତା'ଠାରୁ ବଳି ଚମତ୍କାର କବିତା ଆଉ ମୁଁ କିଛି ପଢ଼ିନାହିଁ । ସେ ଠିକ୍ ଅଛି । କିନ୍ତୁ—ତୁମେ ଯେଉଁ ଶଙ୍କରକୁ ତା'ର ନବବଧୂ ସଙ୍ଗେ ଆସନ୍ତା କାଲି ଭୋର ଗାଡ଼ିରେ ଆସି ପହଞ୍ଚିବ ବୋଲି କହୁଛ—ତାର ଆକୃତି, ପ୍ରକୃତି ଓ ଗୁଣାବଳୀ ସମ୍ପର୍କରେ ପ୍ରକୃତରେ ମୁଁ କିଛି ଜାଣିଛି ବୋଲି ମୋର ମନେ ହେଉନାହିଁ—କିମ୍ବା ମୁଁ କିଛି ମନେପକାଇ ପାରୁନାହିଁ—ଏ ଦୁଇଟା କଥାରୁ ଗୋଟାଏ କିଛି ହୋଇପାରେ । ମୋତେ କ୍ଷମା କର ଶୈବାଳିନୀ ! ହୁଏତ ବୟସ ଏବଂ ଜଞ୍ଜାଳ ବଢ଼ିଯାଉଥିବା ହେତୁ ହେଉ ବା ଅନ୍ୟ କିଛି କାରଣରୁ ହେଉ ଅନେକ ସାନ ସାନ କଥା—ନା-ନା-ନା—ଅନେକ ଏହିଭଳି ବଡ଼ ବଡ଼ କଥା ବି ମୋର ଏବେ ମନେ ପଡ଼ୁନାହିଁ । ମୋର ସ୍ମୃତି କ୍ଷେତ୍ରରେ ନିଶ୍ଚୟ କିଛି ଗୋଳମାଳ ହେଲାଣି ।—ଗ୍ରୁଡ଼ ! ସେ କଥାକୁ ଗୁଲି ମାର । ଅସଲ କଥା ହେଲା—ସେହି ଅବଶ୍ୟ ପ୍ରାତଃସ୍ମରଣୀୟ ଶ୍ରୀମାନ୍ ଶଙ୍କର ତାଙ୍କର ପରମା ରୂପବତୀ ଓ ଗୁଣବତୀ ନବବଧୂଙ୍କୁ ଧରି ଆମ ଘରକୁ ସସମ୍ମାନେ କାଲି ବଡ଼ି ଭୋରରୁ ଆସନ୍ତି । କାଲି ଭୋର୍‌ରୁ ବା କାହିଁକି ? ଆଜି ମଧ୍ୟ ଏଇ ରାତି ନଅଟା ମେଲ୍‌ରେ

ଆସି ଏଠି ପହଞ୍ଚି ଯା'ନ୍ତୁ—ଏବଂ ତାଙ୍କର ଆତିଥ୍ୟ ଲାଗି, ଚର୍ଚ୍ଚା ଲାଗି, ସତ୍କାର ଲାଗି ଅନ୍ତତଃ ଗ୍ୱେଟି କୁକ୍‌କୁଟ ଫାର୍ମରୁ ଅଣାଯାଇ କଟା ହେଉନ୍ତୁ—ଦୁଧ, ସ୍ୱିଡ଼, ସନ୍ଦେଶାଦି ସହ ପଲଉ, ବିରିଆନୀ ତିଆରି ହେଉ—ଅବା କିଛି ଚପ୍ କଟ୍‌ଲେଟ୍ ମଧ୍ୟ ବନାଯାଉ । ତାଙ୍କୁ ଅଭ୍ୟର୍ଥନା ଜଣାଇବା ଲାଗି ବା ତାଙ୍କୁ ଏକ କୋଳାହଳମଧ୍ୟ ସାନ୍ନିଧ୍ୟ ଦେବାପାଇଁ ତୁମର ବା ସେହି ଅତିଥି ପୁଙ୍ଗବଙ୍କର କେତେକ ଦ୍ରାବକ ଓ ବନ୍ଧୁବାନ୍ଧବଙ୍କୁ ମଧ୍ୟ ନିମନ୍ତ୍ରଣ କରି ଗୋଟାଏ ବିରାଟ ପାର୍ଟିର ଆୟୋଜନ ହେଉ । ଏ ସବୁ ଅତି ଉତ୍ତମ ବ୍ୟବସ୍ଥା । ଏଥିରେ କାହାର କିଛି ଆପତ୍ତି ଅଭିଯୋଗ ଉଠାଇବାର କାରଣ ନାହିଁ—ଅଧିକାର ମଧ୍ୟ ନାହିଁ । ଶଙ୍କର ଆସିବେ—ତାଙ୍କର ନବବଧୂଙ୍କୁ ଧରି । ଅତି ଆନନ୍ଦର କଥା । ମାତ୍ର ମୋର ସାମାନ୍ୟ ପ୍ରଶ୍ନଟି ହେଉଛି—ସେହି ପରମ ଭାଗ୍ୟବାନ ପୁରୁଷପୁଙ୍ଗବ ଶଙ୍କରଟି କିଏ ? ଓ ତାଙ୍କର ଗୁଣାବଳୀ, କାର୍ଯ୍ୟକଳାପ ବା ଆମ ସଙ୍ଗେ ତାଙ୍କର ସେହି ଗଭୀର ରହସ୍ୟମୟ ସମ୍ପର୍କଟି ସମ୍ବନ୍ଧେ ତୁମେ ଯାହା ଜାଣ—ବା ଯାହା ପ୍ରକାଶ କରିବାକୁ ଚାହଁ—ତାହା ଅତି ସଂକ୍ଷେପରେ—ମାନେ ମାତ୍ର ଦୁଇଟି ଧାଡ଼ିରେ ବି ପ୍ରକାଶ କରି ମୋ ସଂଶୟ ଦୂର କର । ଆଉ, ମୋର ଗୋମେଷାଦି ସୁଲଭ ସ୍ମୃତିଶକ୍ତି ଉପରେ ବୃଥା ଭରସା ରଖି ଆଉ ଅଧିକ ବିରକ୍ତ ହୁଅ ନାହିଁ । ଅଙ୍କର ଏହି ସୁନ୍ଦର ପେଲବ ମନୋରମ ବିଛଣାଟି ତୁମ ସଙ୍ଗେ ଏକତ୍ର ଉପଭୋଗ କରିବାର ସୁବର୍ଣ୍ଣ ବା ମାହେନ୍ଦ୍ର ସୁଯୋଗରୁ ମୋତେ କୃପାକରି ବଞ୍ଚିତ କରନାହିଁ । ଏହାକୁ ମୋର ବିନୀତ ପ୍ରାର୍ଥନା ବୋଲି ମନେ କରିପାର ।

ଶୈବାଳିନୀ ମୋର ଏହି ବିସ୍ତାରିତ ଉକ୍ତିଟିକୁ ଶୁଣୁ ଶୁଣୁ ବିରକ୍ତ ହୋଇଉଠୁଥିଲେ । ପୁରୁଷଙ୍କ ତୁଣ୍ଡରୁ ଏତେ ବଡ଼ ବଡ଼ ସଳାପ ବା ବଚନିକା ଶୁଣିବା ତାଙ୍କ ଧୈର୍ଯ୍ୟ ଶକ୍ତିକୁ ପୋଷାଏ ନାହିଁ । ତା'ଛଡ଼ା ଏ ବ୍ୟାପାରରେ ସେ ଏକା ବୋଲି ଅବା କାହିଁପାଇଁ କହିବା ? —କୋଉ ନାରୀ ଭଲ । ଆପଣା ରୂପଗୁଣର ପ୍ରଶଂସା ବା ସ୍ତୁତିବାକ୍ୟ ବ୍ୟତୀତ ଆଉ ଅଧିକ କିଛି କଥା ପୁରୁଷ ତୁଣ୍ଡରୁ ଶୁଣିବାକୁ ପ୍ରସ୍ତୁତ ଥାଏ ? ଶୈବାଳିନୀ ତାଙ୍କର ପିଲାଦିନୁଁ ବେଶ୍ ବିଳାସିନୀ । ଧନୀକର କନ୍ୟା—ଉଚ୍ଚ ଶିକ୍ଷିତା । ଏଠି ମଧ୍ୟ ଗୋମେଷାଦି ପଶୁପକ୍ଷୀଙ୍କ ବେପାରରୁ ଗୋଟେଇଥିବା ସ୍ୱାମୀଙ୍କର ସମସ୍ତ ମୋଟା ଉପାର୍ଜନର ଅଧିକାରିଣୀ । ପାଞ୍ଚୋଟି ପ୍ରାପ୍ତବୟସ୍କ ସନ୍ତାନ ସନ୍ତତିଙ୍କର ଜନନୀ ହୋଇ ମଧ୍ୟ ସ୍ୱାସ୍ଥ୍ୟ, ରୂପ, ବେଶଭୂଷା, ଚାଲି-ଚଳଣୀରୁ ସେତିକ ବାରିବା ଏତେ ସହଜ ନୁହେଁ । ଦେହର ମେଦବୃଦ୍ଧି ସମ୍ବନ୍ଧେ ଖୁବ୍ ସଚେତନ । ଡାଏଟିଂ ବା ଖାଦ୍ୟ ସଂଯମ ସାଥିରେ ପ୍ରତିଦିନ ଏପରି କିଛି ରୁଟିନ୍ ବନ୍ଧା ବ୍ୟାୟାମ ସାଧନ କରି ସେ ତାଙ୍କର କଟୀ, ବକ୍ଷ ଓ ନିତମ୍ବାଦିର ସୁଷମ ଭାରସାମ୍ୟ ଯଥା ସାଧ୍ୟ ରଖିପାରିଛନ୍ତି । କିନ୍ତୁ ତାଙ୍କର ସବୁବେଳେ ଦରକାର କିଛି ଉତ୍ତେଜନା । ପ୍ରତିଦିନ ଘରେ ଓ ବାହାରେ କିଛି ହୈ ଚୈ ନ ହେଲେ ସେ ଶାନ୍ତିରେ ଶୋଇ ମଧ୍ୟ ପାରିବେ ନାହିଁ । ତେଣୁ ପ୍ରତିଦିନ ତ ଏମିତି ଲୀଳା ଲାଗିରହିଥାଏ । ଆଜି ବନ୍ଧୁ ଆସିବେ—କାଲି ପିକ୍‌ନିକ୍—ପଅରିଦିନ ସଙ୍ଗୀତ ଆସର—ତା' ଆର ଦିନ ନାରୀ-ନ୍ୟାୟ-ଅଧିକାର-

ଦିବସ—ଏମନ୍ତ ଲାଗିରହିଛି । ମୋର ବା ତାଙ୍କ ସାଙ୍ଗେ ତାଳ ଦେବାକୁ ଫୁର୍ସତ କାହିଁ ? ତେଣୁ ସେ ମୋତେ ସ୍ୱାମୀ ବୋଲି ସ୍ୱୀକାର କଲେ ବି ମୁଁ ଭାବେ ମୁଁ ତାଙ୍କର ଗୋସ୍ୱାମୀ ମାତ୍ର । ମୋର ଦାମ୍ପତ୍ୟ ଜୀବନର ପଚିଶିଟି ବର୍ଷ ଭିତରେ ମୁଁ ଯେ ତାଙ୍କ ପାଇଁ ଧନ୍ୟ ହୋଇଛି ସେକଥା ତାଙ୍କର ପ୍ରବଣ ସ୍ୱତୁଣ୍ଡରୁ ବାରମ୍ବାର ଶୁଣିବାକୁ ମୁଁ ଖୁବ୍ ଭଲପାଏ ଏବଂ କହିବା ବାହୁଲ୍ୟ—ତାଙ୍କ ପ୍ରକୃତି ସଙ୍ଗେ ମୋର ବହୁ ଅମେଳ ଥିବା ସତ୍ତ୍ୱେପି ତାଙ୍କ ପ୍ରେମ ଗୁହାଳରେ, ତଥା ମୋହ ପାଶରେ ମୁଁ ଆଜୀବନ ବନ୍ଧା ତଙ୍କର ଘନଶ୍ୟାମ ମହାପାତ୍ର ନାମଧେୟ ଗୋସ୍ୱାମୀଟିଏ । ମୁଁ ତେଣୁ ପୁନଶ୍ଚ ହାତଯୋଡ଼ି କହିଲି—କୁହନ୍ତୁ ରାଣୀ ! ଏ ଶଙ୍କରଟି ପ୍ରକୃତରେ କିଏ ?

କଣ ତୁମେ ଏଣୁ ତେଣୁ ବକ୍‌ବାଦ କରୁଚ ଯେ ! ଶଙ୍କରକୁ ତୁମେ ମନେ ପକାଇ ପାରୁନାହଁ ? ଏଇ ଗଲା ଫେବୃୟାରୀରେ ବାହା ହେଲାନି ସେ ? ତା' ବାହାଘରକୁ ତୁମେ ସିନା ଯାଇଥିଲେ ଜାଣିଥାନ୍ତ ? ତୁମର ତ ଗୋରୁମେଣ୍ଟଙ୍କ ସାଙ୍ଗେ ସବୁବେଳେ କାମ । ତୁମର ଭଲ ଆଉ ମଣିଷ ସମାଜ ସଙ୍ଗେ କିଛି ସମ୍ପର୍କ ଅଛି ? ମୁଁ ଆଉ ଲିଲି ଦୁହେଁଯାକ ଯାଇଥିଲୁ । ଖୁବ୍ ସୁନ୍ଦରୀ ଝିଅଟିଏ ବାହାହୋଇଛି । ଏତେ ସୁନ୍ଦର ନୁହଁ ସଦାଓ—ତଥାପି ଖୁବ୍ ଗ୍ରେସ୍‌ଫୁଲ ଚେହେରା—ନାଚେ ଖୁବ୍ ସୁନ୍ଦର । ବମ୍ବେ, କଲିକତା, ମାନ୍ଦ୍ରାଜରେ ଏବେ ନାଚ ଦେଖାଇ ଖୁବ୍ ନାମ କରିଛି । ନାଁ'ଟି ମଧ୍ୟ ଖୁବ୍ ସୁନ୍ଦର—ମଞ୍ଜୁଶ୍ରୀ—ମଞ୍ଜୁଶ୍ରୀ ନା ? ହଁ—ମଞ୍ଜୁଶ୍ରୀ ତ ! ତାର ଫଟୋ ମଧ୍ୟ କେତେଥର କାଗଜରେ ବାହାରିଛି—ଦେଖିନାହଁ ? ତା କାହିଁକି ଦେଖିବ ତୁମେ ? ଗୋଟାଏ ଓଡ଼ିଆ ଝିଅ ନୃତ୍ୟ ଗୀତରେ ଏତେ ପାରଦର୍ଶିନୀ ହେଲା—ଅନ୍ୟ ପ୍ରଦେଶରେ ଏତେ ନାମ କମାଇଲା । ଅଥଚ ତୁମେମାନେ ତା' ନାମ ମନେ ରଖିବନାହିଁ କି ତା' ଚେହେରା ବି ଫଟୋରେ ଦେଖିବନାହିଁ । ଓଡ଼ିଆ ପୁରୁଷ ଗୁଡ଼ାକ ମଣିଷ ନା ଗୋରୁ କେଜାଣି ? ଏଇ ଗୋରୁମାନଙ୍କ ଯୋଗୁ ଓଡ଼ିଆ ନାରୀ ଆଜି ଅଗ୍ରଗତି କରି ପାରୁନି । ଖାଲି ଈର୍ଷା—ଈର୍ଷା—ଜେଲସି ! ଦାଇ ନେମ୍ ଇଜ୍ ମ୍ୟାନ୍ । ( Jelousy thy name is man )

ମୋତେ ଦେଣ୍ଟ କୌତୁକ ଲାଗୁଥିଲା । ମୁଁ କହିଲି—ଶୈବାଳିନୀ ! ମୁଁ ବର୍ତ୍ତମାନ ହିଁ ସେହି ପରମ ଭାଗ୍ୟବତୀ ରମଣୀଙ୍କ ଉଦ୍ଦେଶ୍ୟରେ ସହସ୍ରବାର ପ୍ରଣାମ ଅର୍ପଣ କରୁଛି । ମାତ୍ର ତାଙ୍କର ସେହି ସୁକୋମଳ କଳାନିପୁଣା କରପଲ୍ଲବଟି ଯାହାର ହାତରେ ଗୁଡ଼ାଇ ହୋଇଯାଇଛି—ଏମନ୍ତ ଯେ ସୌଭାଗ୍ୟବାନ ସୁପୁରୁଷ ଶ୍ରୀମାନ୍ ଶଙ୍କର—ସେ କି ଆସନ୍ତା କାଲି ଭୋର ଗାଡ଼ିରେ ଆସି ତାଙ୍କର ଚରଣ ଧୂଳି ଆମ ଘରେ ଝାଡ଼ି ଆମ୍ଭମାନଙ୍କୁ କୃତାର୍ଥ କରିବେ—ତାଙ୍କର ଗୁଣାଗୁଣ ବା କୀର୍ତ୍ତିକଳାପ ବା ଆମ ସଙ୍ଗେ ତାଙ୍କର ଏପରି ଗଭୀର ଓ ମଧୁର ସମ୍ପର୍କର ସୂତ୍ରପାତ ବା ନାତିଦୀର୍ଘ—ରୋମାଣ୍ଟିକ୍ ବା କ୍ଲାସିକାଲ୍ ଐତିହାସିକ କାହାଣୀ ଯଥା ସମ୍ଭବ ସଂକ୍ଷେପରେ ବର୍ଣ୍ଣନା କଲେ, ଏ ଅଧମ ତୁମ ସଙ୍ଗେ ଏହି ଅକସ୍ମାତ୍ ବନ୍ଧୁ ମିଳନ ଓ ଚର୍ଚ୍ଚା ସମ୍ବନ୍ଧୀୟ ବ୍ୟାପାରରେ ଯୋଗ ଦେଇ ଆନନ୍ଦ ଲାଭ କରିବ ଓ ଆଜିର ଏହି

ମନୋରମ ନୈଶ ଶଯ୍ୟାଟି ମଧ୍ୟ ଚରିତାର୍ଥ ହୋଇପାରିବ । କୃତ୍ରିମ ମହାରାଣୀ ! ଏଇ ଶଙ୍କର ମହାପୁରୁଷଟି କବେ ଓ କୋଉ ପୀଠରୁ ଆଗମନ କରୁଛନ୍ତି ?

ଶୈବାଳିନୀ ଏଥର ସତକୁ ସତ ରାଗିଗଲେ । ଦେଖ ! ତୁମ ସଙ୍ଗେ ଏଣିକି ମୋର କଥା ବି ଆଉ କହିବାକୁ ଇଚ୍ଛା ହେଉନାହିଁ । ତୁମେ ଏତେ କୃତଘ୍ନ ? ଉପକାରୀ ଲୋକକୁ ମନେରଖି ପାରନା ?

ଉପକାରୀ ? ମୁଁ ଅକ୍ଷି ତାରାଟି ଧଡ଼ାପ୍‌କିନା ବିଛଣାରୁ ଉଠିପଡ଼ି ବସିଲି । ଉପକାରୀ ? କ୍ଷମାକର ଶୈବାଳିନୀ ! ଏ ବଡ଼ ଖରାପ କଥା ନିଶ୍ଚୟ । ଉପକାରୀ ବ୍ୟକ୍ତିକୁ ମନେପକାଇ ନପାରିବାଠାରୁ ବଳି କୃତଘ୍ନତା ଆଉ ନାହିଁ । କିନ୍ତୁ ମତେ କ୍ଷମା କର । ଅନ୍ତତଃ ସେହି ଉପକାରଟି ବିଷୟରେ ମତେ ଟିକିଏ—ମାନେ ଗୋଟାଏ ବୋଲି ଧାତୁ ନହେଲେ ଏବେ ଗୋଟାଏ ଶବ୍ଦ ଖାଲି ମନେପକାଇ ଦିଅନ୍ତ ! ତେଣିକି ମୋର ସବୁ ଛୁଏଁ ଛୁଏଁ ମନେ-ପଡ଼ିଯିବ । ମୋ ରାଣୀ—କୁହ । ରାଗ କରନା । ଗୋଟାଏ ଶବ୍ଦ—ଆଚ୍ଛା ନହେଲେ ଏବେ ମୋଟେ—ଏଇ ଯିମିତି—ଟେ-ଧା-ଲୋ-ଷୌ-ଆ-ଶୃଂ-କ୍ର କମ୍ପା ଷ୍ଟେ...

ଶୈବାଳିନୀ କଟମଟ କରି ମୋ ଆଡ଼କୁ ଚାହିଁ ରହିଲେ । ସତେକି ମୁଁ ଗୋଟାଏ ଘୃଣ୍ୟ ପୁରୁଷ—ନରକର କୀଟାନୁକୀଟ !

ଥଟ୍ଟା କରୁଛ ? ତୁମକୁ ଲଜ୍ଜା ଲାଗେନା ? ତୁମେ ଏତେ ସ୍ୱାର୍ଥପର ହୋଇଗଲଣି ଦିନକୁ ଦିନ ? ତୁମେ ଯେ ଖୁବ୍ ସ୍ୱାର୍ଥପର ତା'ତ ମୁଁ ତୁମକୁ ବାହା ହେଲା ଦିନୁଁ ଜାଣିଛି । ମାତ୍ର ଏତେଦୂର ତୁମର ଅଧଃପତନ ହେଲଣି ? ଛି-ଛି-ଛି । ଘୋରୁ ମେଣ୍ଢାଙ୍କ ମେଳରେ ଚବିଶି ଘଣ୍ଟା ରହିଲେ ଯାହା ହୁଏ—ତୁମର ତା' ହୋଇସାରିଲଣି । ଆଉ ଭାବିଲେ ବା ଅନୁଶୋଚନା କଲେ ଲାଭ କଣ ? ଛାଡ଼ । ଶଙ୍କରକୁ ମନେ ପକାଇବା—ବା ତା' ଉପକାର ବିଷୟ ସ୍ମରଣ କରିବା ବି ତୁମର ଆଉ ଦରକାର ନାହିଁ । ଯାଅ—ଯାଅ—ତୁମେ ତୁମ ଗୁହାଳକୁ ଯାଅ । ମଣିଷ ସମାଜ ସଙ୍ଗେ ତୁମର ଆଉ ସମ୍ପର୍କ ନାହିଁ ।

ଡମ ଡମ ହୋଇ ମୁହଁ ମୋଡ଼ି ଶୈବାଳିନୀ ଚାଲିଯାଉଥିଲେ । ମାତ୍ର ମୁଁ ତାଙ୍କ ହାତ ଧରି ପକାଇଲି ପଛଆଡ଼ୁ । ଅନୁନୟ କରି କହିଲି—ମୋ ରାଣୀଟି ! ମତେ କ୍ଷମା-କର । ମୋର କାହାର ଉପକାର ଭୁଲିବା ଭଳି ମନ ପ୍ରକୃତି ରହିବା ଉଚିତ ନୁହେଁ । କିନ୍ତୁ କ୍ରମଶଃ ମୋର ସ୍ମୃତି ବିଭ୍ରମ ଘଟିଲଣି ଦେଖୁଛି । ମୋର ମୁଣ୍ଡରେ ଚନ୍ଦ ଯାଉଛି ବୋଲି ଡାକ୍ତରମାନେ ସନ୍ଦେହ କରୁଛନ୍ତି, ବୋଧହୁଏ ଏଇଟା ତାରି ଫଳ । ଛାଡ଼ ସେକଥା । ବହୁମୂଲ୍ୟ ଭେଗି ମୋ ଭଳି କୃତଘ୍ନ ଗୋରୁ ମରିଗଲେ ବି ଏ ସଂସାରର କଣ କ୍ଷତି ହୋଇ ଯାଉଛି ? ଛାଡ଼ ମୋ ରାଣୀଟା ପରା ! ଶଙ୍କରଙ୍କ ବିଷୟରେ ବା ତାଙ୍କ ଉପକାର ବିଷୟରେ ମତେ କିଛି ସ୍ମରଣ କରାଇ ଦିଅ । ନଚେତ୍ ଅନୁଶୋଚନାର ଅଗ୍ନିରେ ପଳେ ପଳେ ଦଗ୍ଧ ହେବାକୁ ମୋତେ ଆସନ୍ତା କାଲିଠାରୁ ଛାଡ଼ିଦିଅ । ଆଜି ରାତିଟା ଯେମିତି ଶଙ୍କର

କୋପାନଳରେ ପୋଡ଼ି ଭସ୍ମ ହୋଇ ନଯାଉ । ଶୈବାଳିନୀ ମୋ ହାତରୁ ତାଙ୍କ ହାତ ଛଡ଼ାଇ ନେଇ କହିଲେ ତୁମକୁ ଆଉ କଣ କହିବି ? ଶଙ୍କରର ଉପକାର କିଏ ଭୁଲି ପାରିବ ? କିଏ ବା ଶୁଝି ପାରିବ ? ଆମେ ତାର କିଛି ପ୍ରତ୍ୟୁପକାର କରି ପାରିଛୁ ? କେବେ କିଛି କୃତଜ୍ଞତା ଦେଖାଇଛୁ ? ସେ ଯେ ଆମ ଘରକୁ କାଲି ଭୋର ଗାଡ଼ିରେ ତାର ସ୍ତ୍ରୀକୁ ଧରି ଆସୁଛି— ଏଇଟା ତାର ଖୁବ୍ ଦୟା ! ତାର ସେଠି କଣ ବନ୍ଧୁବାନ୍ଧବର ଅଭାବ ଅଛନ୍ତି ? ତାର ଦୁଇଟା ଶଳା ଅଛନ୍ତି ଏଠି । ଜଣେ ଡାକ୍ତର, ଜଣେ ପ୍ରିନ୍‌ସିପାଲ । ତାର ପ୍ରଖ୍ୟାତନାମା ଗୁଣବତୀ ସ୍ତ୍ରୀକୁ ଅଭ୍ୟର୍ଥନା ଜଣାଇବା ଲାଗି—ଆଉ ତାକୁ ଅତିଥି ରୂପେ ପାଇବା ଲାଗି ଏ ସହରରେ ବହୁ ବିଶିଷ୍ଟ ଲୋକ ମଧ୍ୟ ଆଶା କରି ବସିଛନ୍ତି । ମାତ୍ର ଶଙ୍କର କାହିଁକି ଆମ ଘରକୁ ଆସିବ ବୋଲି ଖବର ଦେଲା କହିଲ ?

ମୁଁ କଥା ଆରମ୍ଭର ସୂତ୍ର ପାଇଯିବାରୁ ଆନନ୍ଦରେ ତାଳିଟିଏ ମାରିଦେଇ କହି-ଉଠିଲି—ଠିକ୍ ଠିକ୍ ! ମୁଁ ସେଇ କଥାଟାଇ ଜାଣିବାକୁ ଚାହୁଁଛି । ସେହି ପରମ ରହସ୍ୟ-ଟିକୁ ଅବଗତ ହେବାକୁ ଚାହୁଁଛି । କାହିଁକି ତାର ସେତେ ଆପଣାର ଲୋକ ସେଠି ଥାଉ ଥାଉ—ବା ତାର ପ୍ରଖ୍ୟାତନାମା ନୃତ୍ୟ ପଟ୍ଟୀୟସୀ ସୁନ୍ଦରୀ ସ୍ତ୍ରୀକୁ ସେଠି ଏତେ ଲୋକ ଅଭ୍ୟର୍ଥନା କରିବାକୁ ପ୍ରସ୍ତୁତ ଥିବା ସତ୍ତ୍ୱେ ସେ ମହାତ୍ମା କାହିଁକି ଆମ ଘରେ ଚରଣଧୂଳି ଦେବେ ବୋଲି ଖବର ପଠାଇଛନ୍ତି ? କାହିଁକି ସେଇ କଥାଟି କୁହ—କାହିଁକି ?

କାହିଁକି କଣମ ? ହେଇଥିରୁ ବୁଝି ପାରୁନା ସେ ଆମର କେତେ ଉପକାରୀ ? ସେ ଆମକୁ କେତେ ଭଲପାଏ !

ମୁଁ ଦେଖିଲି—କୌଣସି ପ୍ରକାରେ ମୁଁ ଆଉ ଶଙ୍କରଙ୍କ ସମ୍ବନ୍ଧେ ଏହାଙ୍କ ତୁଣ୍ଡରୁ ଆଉ କିଛି ଜାଣି ପାରିବି ନାହିଁ । ସବୁକଥା ଜାଣିବା ମଧ୍ୟ ମୋର ଅନୁଚିତ । ସବୁକଥା ଯେ ମୁଁ ବୁଝିପାରିବି ତା ମଧ୍ୟ ନୁହେଁ; ତେଣୁ ଆଉ ଉଚ୍ଚବାଚ୍ଚ ନକରି କହିଲି—ତୁମେ ଯାହା କହୁଛ—ସେ କଥା ନିଶ୍ଚୟ । ସେ ଆମର ପରମ ଉପକାରୀ—ଆଉ ଆମକୁ ନିଶ୍ଚୟ ଖୁବ୍ ଭଲପାଏ ! ଏଇ ସାମାନ୍ୟ କଥାଟା ନବୁଝି ପାରିବାରୁ ସିନା ଏତେ ଗଣ୍ଡଗୋଳ ! ଠିକ୍ ଅଛି, ବର୍ତ୍ତମାନ ସବୁକଥା ବୁଝା ପଡ଼ିଲା । ଅଚ୍ଛା, କାଲି ଭୋରରୁ କଣ ଷ୍ଟେସନ୍‌କୁ ଗାଡ଼ି ପଠାଇବ ? ତାହେଲେ ଡ୍ରାଇଭରକୁ ଖବରଟା ଦେଇଦିଅ ଚଞ୍ଚଳ, ନଚେତ୍ ସେ ତା' ଘରକୁ ବାହାରିଯିବ ।

ଶୈବାଳିନୀ ତାଚ୍ଛଲ୍ୟ କରି କହିଲେ—ଯାଉନ ! ତୁମର ଯୋଉ ବୁଦ୍ଧି ! ଯୋଉ ଅକ୍‌କଲ ! ଶଙ୍କର ଭଳି ଉପକାରୀ ପ୍ରେମୀବନ୍ଧୁ ତାଙ୍କର ଏତେବଡ଼ ଗୁଣବତୀ ନବବଧୂକୁ ଧରି ଷ୍ଟେସନରେ ଓହ୍ଲାଇବେ—ଆମକୁ ଅପେକ୍ଷା କରିବେ—ଆଉ ମୁଁ ନିଜେ ସେମାନଙ୍କୁ ପାଛୋଟି ଆଣିବାକୁ ନଯାଇ ଡ୍ରାଇଭରକୁ ପଠାଇବି ? ମୁଁ ନିଜେଇ ଗାଡ଼ି ନେଇ ଯିବି । ଇସ୍—ନିଜେ ଗୋରୁ ବୋଲି ମତେ ମଧ୍ୟ ସେଇଆ ଭାବୁଛ, ନାହିଁ ?

ମୁଁ କହିଲି—ନା-ନା-ନା । ମୋ ଆଖି ଛୁଉଁଛି—ମୋ ମୁଣ୍ଡ ଛୁଉଁଛି—ମୁଁ ସେ କଥା ଘୁଣାକ୍ଷରେ ବି ଭାବିନାହିଁ । ତୁମେ କାହିଁକି ଗୋରୁ ହେବ ? ଗୋରୁ ହେବା ମଧ୍ୟ ଏତେ ସହଜ କଥା ନୁହେଁ । ବହୁ ସାଧ୍ୟ ସାଧନା ନକଲେ କେହି ଗୋରୁ ହୋଇପାରେନା । ତୁମେ କାଲି ସକାଳେ ନିଜେ ଗାଡ଼ିଧରି ଯାଅ ଷ୍ଟେସନ୍‌କୁ । ସେଇଟା ଠିକ୍ ହେବ । ଭଲ ହେବ । ଡ୍ରାଇଭରକୁ ପଠାଇବା ଆଦୌ ଠିକ୍ ହେବ ନାହିଁ । ଭଦ୍ରତା ବା ସୌଜନ୍ୟ ତ ଫେର୍ ଗୋଟେ ଅଛି ! ତା' ଛଡ଼ା ଶଙ୍କର ଭଳି ଉପକାରୀ ଆଉ ପ୍ରେମୀ ବନ୍ଧୁ ଆସୁଛନ୍ତି—ପୁଣି ତାଙ୍କ ସାଙ୍ଗେ ତାଙ୍କର ଏତେବଡ଼ ଖ୍ୟାତିସମ୍ପନ୍ନା ନୃତ୍ୟ ପଟିୟସୀ ନବବଧୂ ମଞ୍ଜୁଶ୍ରୀ ଦେବୀ ଆସୁଛନ୍ତି । ତୁମର ନିଜେ ଯାଇ ତାଙ୍କୁ ପାଛୋଟି ଆଣିବା ନିତାନ୍ତ ଉଚିତ ହେବ । ମୁଁ ଘଟଣାଟିର ଗୁରୁତ୍ୱ ଏତେ ବେଳଯାଏ ମନେକରି ପାରୁନଥିଲି । ଦେଖ ! ଆଉ ମଧ୍ୟ ଯାହା ସବୁ କରିସିବା କଥା—ତା ସବୁ ପ୍ରସ୍ତୁତ କରି ରଖ ।

ଏତିକି ଶୁଣିବା ମାତ୍ରେ ଶୈବାଳିନୀ ବେଶ୍ ଖୁସି ହୋଇଗଲେ । ହସି ହସି ପ୍ରାୟ ମୋତେ ଆଲିଙ୍ଗନ କଲାଭଳି କହିଲେ—ଏବେ ମନେ ପଡ଼ିଲା ତ ? ଏବେ ସବୁକଥା ବୁଝିଲ ତ ? ତୁମର ତ ସବୁକଥା ଏମିତି ପଛରେ ହିଁ ମନେପଡ଼େ । ସବୁ କଥା ପଛରେ ହିଁ ବୁଝାପଡ଼େ । କିନ୍ତୁ ସେତେବେଳକୁ ସମୟ ଗଡ଼ିଯାଇଥାଏ ।

ଆଲିଙ୍ଗନର ଉଲ୍ଲାସରେ ମୁଁ କହିଲି—ଆରେ ନା-ନା-ନା—ଏବେ ବି ବହୁତ ସମୟ ଅଛି । ବର୍ତ୍ତମାନ ତ ରାତି ସାଢ଼େ ନଅଟା ମାତ୍ର । ସେମାନେ ତ ଯାଇ ଆସିବେ କାଲି ସକାଳ ଛଅଟାରେ । ଆମକୁ ବର୍ତ୍ତମାନ ଠାରୁ ସାରା ରାତି ଜାଗି ରହିବାକୁ ପଡ଼ିବ । କାରଣ—ବିଛଣାଟା ଆଜି ଯାହା କରେଇଛ ନା ! ଆମକୁ ଏମିତି ନିଦ ଲାଗି ଯାଇପାରେ—ଯାହାକି କାଲି ସକାଳ ନଅଟା ପର୍ଯ୍ୟନ୍ତ ବି ଭାଙ୍ଗି ନପାରେ । ଛି-ଛି-ଛି ଶଙ୍କରର ଭଳି ଆମର ଏତେ ଉପକାରୀ ପ୍ରେମୀ ବନ୍ଧୁଙ୍କୁ ଷ୍ଟେସନରେ ଏତେ ସମୟ ଅଟକାଇ ରଖିବା କେତେ ଗର୍ହିତ କଥା ହେବ କହିଲ ?

ଶୈବାଳିନୀ ତୃପ୍ତ ହସରେ ମୋ ଗାଲଟିକୁ ସାମାନ୍ୟ ଟୋଉଡ଼ିଦେଇ କହିଲେ—ନା-ନା ମତେ ତୁମ ଭଳି ଏମିତି ଗୋରୁ ଭାବ ନାହିଁ । ତୁମର ତ ଗୁହାଳରେ ବି ନିଦ ଘୋଟିଯାଏ—ତଣ୍ଟି ତୁମର ଘଡ଼ଘଡ଼ ଡାକେ । ମାତ୍ର ମତେ ସେମିତି ନିଦ ହେବ ନାହିଁ । କାଲି ସକାଳ ଛଅଟାରେ ଟ୍ରେନର ଗାଡ଼ି ଷ୍ଟେସନରେ ପହଞ୍ଚିବ । ମତେ ଏଠୁ ଯିବାକୁ ପଡ଼ିବ ସାଢ଼େ ପାଞ୍ଚଟାରେ । ଷ୍ଟେସନ ଲାଗିବ ଦଶ ମିନଟ । ତା'ହେଲେ ବି ମତେ ବିଛଣାରୁ ଉଠିବାକୁ ପଡ଼ିବ ରାତି ସାଢ଼େ ଚାରିଟାରୁ । କାରଣ ମତେ ତ ପୁଣି ପ୍ରସ୍ତୁତ ହେବାକୁ ପଡ଼ିବ । ମେକପ୍ ଟେକପ୍ ତ ଅଛି ।

ମୁଁ କୃତକୃତ୍ୟ ହୋଇ କହିଲି—ତା' ନିଶ୍ଚୟ—ତା' ନିଶ୍ଚୟ ।

ଶୈବାଳିନୀ କହିଲେ—ସେଇଥିଲାଗି କହୁଛି—ତୁମେ ସାରା ରାତିଟା ଉଜାଗର ରୁହ । ମୁଁ ଟିକିଏ ଶୋଇନେବି । କାରଣ କାଲି ମତେ ସେମାନଙ୍କ ଚର୍ଚ୍ଚାରେ ଦିନ ରାତି ବ୍ୟସ୍ତ

ରହିବାକୁ ପଡ଼ିବ ନା ! ମୋତେ ଠିକ୍ ଭୋର ଘଣ୍ଟାରେ ଉଠେଇଦେବ । ନା-ନା ଆଲାର୍ମ ଘଣ୍ଟାକୁ ବିଶ୍ୱାସ ନାହିଁ । ଦେଖ ! ତୁମେ ଯେମିତି ଶୋଇ ନପଡ଼ । ତୁମର ତ ଗୋରୁଙ୍କ ନିଦ !

ଏତେ ସୁନ୍ଦର ଦୁଗ୍ଧ ଫେନନିଭ ମନୋରମ ବିଛଣା ଉପରେ ମତେ ସାରା ରାତି ଉଜାଗର ରହିବାକୁ ପଡ଼ିଲା । ଶୈବାଳିନୀ ବେଶ୍ ଶୋଇପଡ଼ିଲେ । ମାତ୍ର ଭୋର ଘଣ୍ଟା ବେଳକୁ ମୋର ଆଖିପତା ଦୁଇଟି ଆଉ ମୋ ବୋଲ ମାନିଲେ ନାହିଁ । ଆପଣାଛାଏଁ ମୁଦି ହୋଇଗଲେ—ଅବଶ୍ୟ ମୋର ବସିଥିବା ଅବସ୍ଥାରେ । ମାତ୍ର ତାଙ୍କର ନିଦ ଆପଣାଛାଏ ଭୋର ଘଣ୍ଟାରେ ଭାଙ୍ଗିଗଲା । ମୋତେ ଉଠାଇବାକୁ ପଡ଼ିନାହିଁ ।

ଯଥାସମୟରେ ଗାଡ଼ିଧରି ଶୈବାଳିନୀ ଷ୍ଟେସନକୁ ଗଲେ । ଏଣେ ଭୋର ଘଣ୍ଟାରେ ଘରର ପୂଜାରୀମାନେ ଉଠି ପ୍ରଭାତକାଳୀନ ଅତିଥିଙ୍କର ପ୍ରାଥମିକ ସତ୍କାର ଲାଗି ଆୟୋଜନରେ ଲାଗିପଡ଼ିଲେ । ମୁଁ ଅତିଥିଙ୍କର ସ୍ୱାଗତ ଲାଗି ବଗିଚା ଭିତରେ ଏପଟ ସେପଟ ହୋଇ ବୁଲି ଲାଗିଲି ।

ଠିକ୍ ସାତଟା ବେଳେ ଫେରିଲେ ଶୈବାଳିନୀ । ମୁଁ ଗାଡ଼ି ଦେଖି ଓ ହର୍ଣ୍ଣ ଶୁଣି ସମସ୍ତଙ୍କୁ ପାଛୋଟି ଆଣିବାକୁ ଫାଟକ ପାଖକୁ ଛୁଟିଗଲି ଓ ଫାଟକ ଖୋଲିଦେଲି । ତାହାହିଁ ଥିଲା ଶୈବାଳିନୀଙ୍କର ନିର୍ଦ୍ଦେଶାତ୍ମକ ଆଦେଶ ।

ମାତ୍ର ଏ କଣ ? ଗାଡ଼ିରେ ତାଙ୍କ ଛଡ଼ା ଅନ୍ୟ ଯେ କେହି ନାହାନ୍ତି ? କଥା କଣ ?

କଥା କଣ ଶୈବାଳିନୀ ? ସେମାନେ କୁଆଡ଼େ ଗଲେ ? ଟ୍ରେନ୍ ବେଶି ଲେଟ୍ ଅଛି ନା କଣ ? ନା—ଟ୍ରେନ୍ ଅସିଲା ନାହିଁ ? କେଜାଣି ଆଜିକାଲି ଯାହା ଯେମିତି ଅବସ୍ଥା । ଅବଶ୍ୟ କରୁଣାକାଳୀନ ପରିସ୍ଥିତିରେ ରେଲୱେ ଧର୍ମଘଟ ଆଦି ନାହିଁ—ମାତ୍ର ବନ୍ୟା ବାତ୍ୟାକୁ କିଏବା କଣ କରିପାରିବ ?

ଡ୍ରାଇଭର ଲାଗି ଗାଡ଼ିଟା ସେଇଠି ଛାଡ଼ିଦେଇ ଶୈବାଳିନୀ ତମତମ ହୋଇ ମୋର କୌଣସି କଥାରେ ଉତ୍ତର ନ ଦେଇ ମତେ ଭ୍ରୂକ୍ଷେପ ବି ନକରି ଘର ଭିତରକୁ ପଶିଆସିଲେ । ମୁଁ ତାଙ୍କ ପଛେ ପଛେ ଡରମର ଦୋଷୀଟିଏ ଭଳି ଧପାଇଲି । ପଚାରିଲି— କଣ ହେଲା ଶୈବାଳିନୀ ?

ଶୈବାଳିନୀ ପାଦରୁ ହାଇହିଲ୍ ଜୋତା କାଢ଼ି ଚପଲ ପିନ୍ଧି ପିନ୍ଧି କହିଲେ ତମତମ ହୋଇ—ହବ ଆଉ କଣ ? ଯାହା ଭାବିଥିଲି ସେଇଆ ହିଁ ହେଲା ।

କଣ ଭାବିଥିଲ ?

ଆସିଲେ ତ ନାହିଁ—ଆଉ କଣ ?

ମାନେ—ଏ ଟ୍ରେନ୍‌ରେ ଆସିଲେ ନାହିଁ ?

ନାଇମ ! ତୁମେ ଅନୁମାନ କର ଠିକ୍ ଗୋରୁଙ୍କ ଭଳି । ବହୁତ ଲୋକ ଗାଡ଼ି ନେଇ ଯାଇଥିଲେ ଷ୍ଟେସନକୁ । ମିଷ୍ଟର ଆଉ ମିସେସ୍ ସିହ୍ନା—ମିସେସ୍ ଚୌଧୁରୀ—ମିସେସ୍ ଦେଉରିଆ—ମିଷ୍ଟର ଆଉ ମିସେସ୍ ରଥ— ।

ତୁମେବି ତ ଗାଡ଼ି ନେଇ ଯାଇଥିଲ ? ମୁଁ ଖୁବ୍ ସନ୍ତ୍ରସ୍ତ ହୋଇ ପଚାରିଲି ।

ନେଇଥିଲି ତ ! ଶଙ୍କର ତ ଆମ ଗାଡ଼ି ଆଡ଼କୁ ମୁହାଁଇ ଆସୁଥିଲା । ମାତ୍ର ତାର ଯୋଉ ନାଚବାଲି ସ୍ତ୍ରୀ ଖଣ୍ଡିକ—କମ୍ ତାର ଗର୍ବ ? କମ୍ ଗର୍ବୀ ଟୋକୀ ଖଣ୍ଡେ ସେ ହୋଇଛି ? କଣ ଏମିତି ତୁ ଗୋଟେ ହୋଇ ଗଲୁଣି ଯେ ! କଣ ମିନତି ଦାସ—ନା ସମୁକ୍ତା ପାଣିଗ୍ରାହୀ ? ଆରେ ଯା'ମ ! ମୁଁ କେତେ ଦେଖିଛି ! ଯୋଉତ ରୂପ—ମୁଁହଟା ତ ଗୋଟେ ଚକୁଳି ପିଠା ପରି । ନାହିଁ କଲା—କହିଲା—ସେ ମିଷ୍ଟର ଆଉ ମିସେସ୍ ରଥଙ୍କ ଘରକୁ ଯିବ । ଯାଉନା ! ମୁଁ ତାକୁ ଖାତିର କରୁଛି ? ଆଉ ଏ ଶଙ୍କରଟା ବି ଗୋଟାଏ ମାଇଚିଆ । ବୁଢ଼ା ବୟସରେ ବାହା ହୋଇଛି ନା—ଏକଦମ୍ ହେନ୍ ପେକ୍ଡ଼ା । ତା'ଛଡ଼ା ଅସଲ୍ କଥାଟା କଣ ଜାଣିଛ ? ଶୁଣ ମ—କାନଟା ଏଣିକି ଆଣ—ଅସଲ କଥାଟା ହେଉଛି—ରଥ ସାହେବଙ୍କ ସଙ୍ଗେ ତାର କୁଆଡ଼େ ଆଗରୁ ଲଭ୍ଟଭ୍ ଥିଲା । ବଜାରୀ ଟୋକୀଟେ ଆଉ କଣ ? ନାଚଫାଚ ଦେଖାଇ ଗୋଟିଏ ମିଥ୍ୟା ହାଲୋ ସୃଷ୍ଟି କରୁଛି ଆଉ କଣ ? ଏଇଟାକୁ ତ ଅଉ କିଏ ବାହା ହେବେ ନଥିଲେ—ଏଇ ଶଙ୍କର ପଡ଼ିଛି ତା' ଫାନ୍ଦରେ ଆଉ କଣ ? ଯାଉ ସେ ଯାଉ । ଆଉ କେବେ ମୁଁ ମୋ ଘର ମଡ଼ାଇ ଦେବି ?—ହେଇଟି ଶୁଣ ! ସେ ଭଳି ଟୋକୀ ଆମ ଘରକୁ ନ ଆସିଛି ଭଲ ହୋଇଛି । ଓଃ ଯୋଉ ଛଇ ଛଟକ ନା ! ପଦେ କଥା କହିବ ତ ଆଖି ନାଚୁଛି—ହାତ ନାଚୁଛି । ଗୁଡ଼ ! କିନ୍ତୁ ବୁଝି ଖବରଦାର—ସେ ଶଙ୍କରଟାକୁ ଦେଖିଲେ ଯେମିତି ତୁମେ ପଦେ କଥା ବି କହିବନାହିଁ । ବୁଝିଲ ? ତୁମର କଣ ମନେ ରହିବ ? ବୁଝୁଛ ନା ନାହିଁ ଯେ !

ମୁଁ ତାଙ୍କ ପାଦରୁ ହାଇହିଲ୍ଟା କାଢ଼ିବାରେ ସାହାଯ୍ୟ କରୁ କରୁ ଭାବିଲି—ଆଉ ବୁଝିବା ବାକି ନାହିଁ । ତେବେ ଆନ୍ତର୍ଜାତିକ ମହିଳା ସମ୍ବତ୍ସରଟି ଧରାପୃଷ୍ଠରୁ ବିଦାୟ ନେବା ଲାଗି ଆଉ ଦୀର୍ଘ ତିନମାସ ଅଛି । କିନ୍ତୁ ମୋର ଯାହା ମନେ ହେଉଛି—ଏ ସମ୍ବତ୍ସରଟି ପୃଥିବୀର ଅନନ୍ତ କାଳ ଯାଏ ବଞ୍ଚି ରହିବ । ଜୟ ମା' ଦୁର୍ଗେ ! ଜୟ ମା' କାଳୀ ! ! ଜୟ ହେଉ ଗୃହ ଦୁର୍ଗାମାନଙ୍କର ।

□□□

# ଅପୂର୍ବ ଅଘଟଣ

ଅଗତ୍ୟା ମୋତେ ହାସ୍‌ପାତାଳରେ ଶଯ୍ୟାଶାୟୀ ହେବାକୁ ପଡ଼ିଲା । ଘରେ ବହୁ ପ୍ରକାର ଚିକିତ୍ସା ଓ ଔଷଧ ସେବନ ସତ୍ତ୍ୱେ ଯେତେବେଳେ ଜ୍ୱର ଛାଡ଼ିଲାନାହିଁ ସେତେବେଳେ ମେଡ଼ିସିନ ବିଭାଗର ପ୍ରଖ୍ୟାତ ଅଧ୍ୟାପକ ମୋର ଅନ୍ତରଙ୍ଗ ବନ୍ଧୁ ଡାକ୍ତର ପରିଜା ମୋତେ ପ୍ରାୟ ହାସପାତାଳକୁ ନେଇଗଲେ ଓ ମୋର ମଳ, ମୂତ୍ର, ରକ୍ତ ଇତ୍ୟାଦିର ଯାବତୀୟ ପରୀକ୍ଷା ନିରୀକ୍ଷା ଆରମ୍ଭ କରିଦେଲେ । ସେମାନେ ପ୍ରାୟ ଆଠଦିନ ପରେ ଯେତେବେଳେ ରୋଗର ନିଦାନ ସଠିକ୍ ହବେ ଜାଣିଲେ—ସେତେବେଳକୁ ପ୍ରାୟ ମୋର ଶରୀର ଭଲ ଆଡ଼କୁ ଗତି କଲିଣି—ଏବଂ ମୁଁ ହାସପାତାଳ ପ୍ରତି ଘୋର ବିରକ୍ତ ହୋଇଉଠିଲିଣି । ମୋର ଭେଷଜ ବିଜ୍ଞାନୀ ବନ୍ଧୁ ଅଧ୍ୟାପକ ଏବଂ ଅନ୍ୟାନ୍ୟ ଡାକ୍ତର, ସିଷ୍ଟର ଓ ସେବକମାନଙ୍କ ପ୍ରତି ଖୁବ୍ କୃତଜ୍ଞତା ଓ ସାଧୁବାଦ ସତ୍ତ୍ୱେ ମୁଁ ଘରକୁ ଫେରିବାକୁ ବ୍ୟଗ୍ର ହୋଇଉଠିଲି । ମାତ୍ର ଡାକ୍ତରଙ୍କ ପରାମର୍ଶ ହେଲା—ଆଉ ସପ୍ତାହେ ସେଠାରେ ବିଶ୍ରାମ ନେବାକୁ ହିଁ ହେବ—ସେମାନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିବାକୁ ହିଁ ହେବ । କାରଣ—ଏ ପ୍ରକାର ଜ୍ୱର ସମ୍ପୂର୍ଣ୍ଣ ନୂତନ—ବଜାରରେ ନାନାଦି ମିଶ୍ରଣ ଭଳି ଏଥିରେ ନାନା ପ୍ରକାର ମିଶ୍ର ଲକ୍ଷଣ, ଉପସର୍ଗ ଓ ପ୍ରତିକ୍ରିୟାଦି ଲକ୍ଷ୍ୟ କରାଯାଉଛି । ତା'ଛଡ଼ା ସ୍ୱନାମଧନ୍ୟ ଭେଷଜ ଅଧ୍ୟାପକ ମୋର ବନ୍ଧୁ ଡା: ପରିଜାଙ୍କର ମୋ ପ୍ରତି ସ୍ୱତନ୍ତ୍ର ଅନୁରୋଧ ହେଲା—ତାଙ୍କର ପୋଷ୍ଟ ଗ୍ରାଜୁଏଟ ଛାତ୍ରମାନଙ୍କ ଲାଗି ମୁଁ ଗୋଟାଏ ସ୍ପେସିମେନ୍ । କାରଣ ଏ ପ୍ରକାର ଅଦ୍ଭୁତ ଜର ସମ୍ପର୍କରେ ସେମାନଙ୍କୁ ପ୍ରତିଦିନ ମୋଠାରୁ ତଥ୍ୟ ସଂଗ୍ରହ କରିବାକୁ ହେଉଛି । ଏ ଜର ମ୍ୟାଲେରିଆ ଭଳି କଂପ ଓ ଶୀତ ସହ ଆସୁଛି—ଟାଇଫଏଡ୍ ଭଳି ନର୍ମାଲକୁ ଆସୁନାହିଁ—ପୁଣି ବାତଜରର କେତେକ ଲକ୍ଷଣ ବି ପ୍ରକାଶ ପାଉଛି—ତା' ସଙ୍ଗକୁ ଇନ୍‌ଫ୍ଲୁଏଞ୍ଜାର ପ୍ରକୋପ ବି ରହୁଛି । ଅଥଚ ରକ୍ତ ପରୀକ୍ଷାରୁ ଯେଉଁସବୁ ତଥ୍ୟ ମିଳୁଛି—ତା' ସଙ୍ଗେ ଏ ସବୁର ବିଶେଷ ସମ୍ପର୍କ ରହୁନାହିଁ । ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଲା—କୌଣସି ନିର୍ଦ୍ଦିଷ୍ଟ ଔଷଧ ଖାଇଲେ ଏହା ଔଷଧକୁ ମାନୁ ନାହିଁ—ଅଥଚ ତା ମନକୁ ମନ ଏ ଜର ପନ୍ଦର ଦିନ ପରେ ଛାଡ଼ି ଆସିଲା—ଏହାହିଁ ଆମର ଚିକିତ୍ସା ବିଜ୍ଞାନର କୌତୂହଳ ବଢ଼ାଇ ଦେଇଛି । ତେଣୁ ତୁମକୁ ଆଉ ସାତଦିନ ଆମେ ଓ୍ୱାଚ କରିବୁ ।

ଡା: ପରିଜାଙ୍କ କଥା ଉପରେ ମୋର ସ୍ତ୍ରୀଙ୍କର ପ୍ରଗାଢ଼ ବିଶ୍ୱାସ । ମୋ ସ୍ତ୍ରୀ କହିଲେ—ତୁମକୁ ଏଠି ରହିବାକୁ ହେବ । ଏଠୁ ଛୁଟି ପାଇଲେ ତୁମକୁ ଆଉ ସମ୍ଭାଳେ କିଏ ?

ଫେର୍ କୁଆଡ଼େ ରାତି ଅନିଦ୍ରା ହୋଇ ଏଣେ ତେଣେ ବୁଲିବ । ସାଙ୍ଗମାନଙ୍କ ସାଙ୍ଗେ ଗପିବ—ଆଡ୍ଡା ମାରିବ—ଏଣୁ ତେଣୁ ଖାଇବ—ନା—ତମକୁ ଏଠି ରହିବାକୁ ହେବ !

ଅଗତ୍ୟା ରହିଲି । ସ୍ତ୍ରୀ ଆଉ ଡାକ୍ତର ଯଦି ଏକଜୁଟ ହେଲେ—ଆଉ ତୁମର ବଳ କଣ ବାବୁ ? ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ଆମେ ଦୁଇଜଣଙ୍କୁ ଡରିବାକୁ ଆରମ୍ଭ କରୁ—ସ୍ତ୍ରୀକୁ ଆଉ ଡାକ୍ତରକୁ ।

କିନ୍ତୁ ସବୁଠାରୁ ଅଡ଼ୁଆ ହେଲା—ଡାକ୍ତର ପରିଜାଙ୍କର ଦିନ ଦୁଇଟାବେଳେ ସଶିଷ୍ୟ ପରିବେଷ୍ଟିତ ହୋଇ ମୋତେ ଘେରିରହି ନାନାଦି ପ୍ରଶ୍ନ ପଚାରି ବିରକ୍ତ କରିବା । କେହି ଛାତ୍ର ମୋର ଆଖିପତାକୁ ମେଲେଇ ଦେଲାଣି ତ— କେହି ମୋର ଜିଭ ଦେଖିଲାଣି—କିଏ ମୋର ନାଡ଼ିଟାକୁ ଅଯଥା ଦେଖୁଛି ତ—କିଏ ମୋର ଛାତିର ଧୁକୁଧୁକୁକୁ ଷ୍ଟେଥୋ ଲଗାଇ ଶୁଣିବାରେ ଲାଗିଛି— ଏବଂ ଅଧଘଣ୍ଟାଏ ଧରି ଡାକ୍ତର ପରିଜାଙ୍କର ଅନର୍ଗଳ ଅବୋଧ ବକ୍ତୃତା । ଦିନ ପରେ ଦିନ ତାକୁ ମଧ୍ୟ ସହିବାକୁ ପଡ଼ୁଥାଏ ।

ସମାଜରେ ଜଣେ ସୁନାମଧନ୍ୟ ଲେଖକ ହୋଇଥିବାରୁ (ପ୍ରକାଶ ଥାଉକି ମୋର ନାମ ଜୀବନାନନ୍ଦ ମହାପାତ୍ର ) ଏବଂ ନାନାଦି ସାମାଜିକ ଅନୁଷ୍ଠାନ ସହିତ ଜଡ଼ିତ ଥିବାରୁ ପ୍ରତିଦିନ ବହୁ ଶୁଭକାଂକ୍ଷୀ ଓ ବନ୍ଧୁଜନ ମଧ୍ୟ ଦେଖିବାକୁ ଆସନ୍ତି । କାହା ହାତରେ କିଛି ଫୁଲ, କାହା ହାତରେ ବା କିଛି ଫଳ । କେହିବା ଖାଲି ଖାଲି ଆସନ୍ତି । ମୁହଁରେ ଆଶା, ଭରସା ଓ ଶୁଭେଚ୍ଛାର ଭଙ୍ଗୀ । ଭଲ ଲାଗେ । ଭଲ ବି ଲାଗେନା । ଭଲ ଲାଗେ—ଏତେ ଲୋକ ମୋର ଶୁଭକାଂକ୍ଷୀ ? ଏତେ ଲୋକ ମତେ ସ୍ନେହ କରନ୍ତି ? ତେବେ ଜୀବନରେ ଯାହା କିଛି ଯତ୍‌ସାମାନ୍ୟ ମୁଁ କରିଛି—ସମାଜ ତାହା କୃତଜ୍ଞତାର ସହିତ ସ୍ୱୀକାର କରିଛି ? ବାଃ ବାଃ ! ସୁନ୍ଦର ତେବେ ଏ ପୃଥିବୀ—ଏ ସମାଜ—ଏ ବନ୍ଧୁ ପରିଜନ !

ଖରାପ ଲାଗେ ପୁଣି ଭିନ୍ନ କାରଣରୁ— । ସୁସ୍ଥ ଲୋକେ ବାହାର ପୃଥିବୀର ସୁସ୍ଥ ଆବହାଓ୍ୱା ନେଇ ଆସିଥାନ୍ତି ସାଙ୍ଗରେ । ଉଜ୍ଜ୍ୱଳ ଆକାଶ—ନିର୍ମଳ ଜଳ—ସତେଜ ଫୁଲ, ଚଢ଼େଇ ଆଉ ବୃକ୍ଷଲତା—ପୁଣି ସୁନ୍ଦର ତାଜା ମାଛ—ସୁସ୍ୱାଦୁ ରନ୍ଧଣାର ସ୍ମୃତି—ସିନେମା, ଥିଏଟର—ଦୋକାନ ବଜାର—ଖେଳ ପଡ଼ିଆ—ଯାନି ଯାତ୍ରା—ଖେଳ କୌତୁକ—ହାଟ ବଜାର—ବାହା ବ୍ରତ—ପର୍ବ ପର୍ବାଣୀ—ସଭା ସମିତି—ପୂଜା ପ୍ରାର୍ଥନା ଇତ୍ୟାଦି ଇତ୍ୟାଦି ଯେତେସବୁ ସୁସ୍ଥ ମଣିଷଙ୍କ କୀର୍ତ୍ତି । ସେମାନଙ୍କୁ ଦେଖି ମନ ଉଚ୍ଛନ୍ନ ହୁଏ । କେଉଁଦିନ ଏ କାରାଗାରରୁ, ଏ ନରକରୁ ମୁକ୍ତି ପାଇବ ? ଏହି ଉଚ୍ଛନ୍ନତା ଆଣେ ଅଶ୍ୱସ୍ତି । ଉଚାଟ ଲାଗେ—ଅଶ୍ୱସ୍ତି ବଢ଼ିଯାଏ ।

ଶଯ୍ୟା ପାଖରେ ଆଲମିରା ଉପରେ ଗଦା ହୋଇଥାଏ ବନ୍ଧୁମାନଙ୍କର ସଦିଚ୍ଛା ସସ୍ନେହ ଉପହାରର ସ୍ତୂପ—ନାନାଦି ଫଳ, ବେଦାନା, ଅଙ୍ଗୁର, ସେଓ, ନାସପାତି, କମଳା । ସେଗୁଡ଼ିକ ସ୍ୱାସ୍ଥ୍ୟଦାୟକ—ସ୍ୱାସ୍ଥ୍ୟର ପ୍ରତୀକ । ମାତ୍ର ମୋର ମନେ ହେଉଥାଏ ଏଠି ନୁହେଁ,

ଏଠି ନୁହଁ, ଏହି ନରକପୁରର ବାହାରେ—ଫଳ ଦୋକାନରେ ଧାଡ଼ି ଧାଡ଼ି ହୋଇ ଥୁଆ ହୋଇଥିଲାବେଳେ, ଝଙ୍ଗା ହୋଇଥିଲାବେଳେ, ସେହି ଦୃଶ୍ୟ ମନ ଭିତରେ ସ୍ୱାସ୍ଥ୍ୟର ଭାବ ସଞ୍ଚାର କରେ । ମାତ୍ର ଏଠି—ଏ ସବୁ ବିଷାଦକର, ବିରକ୍ତିକର । ଏଠି ଏସବୁ ଦେଖି ମନରେ କେବଳ ଗୋଟିଏ କଥା ଆସେ—ଏ ପୃଥିବୀରେ କେବଳ ରୋଗ ହିଁ ସତ୍ୟ ଆଉ ବାସ୍ତବ—ଏବଂ ଏହି ଫଳଗୁଡ଼ିକ ସେହି ରୋଗର ସେବାଲାଗି ହିଁ ଉଦ୍ଦିଷ୍ଟ ।

ଠିକ୍ ଅଛି । ଆଜି ଦିନ କେତୁଟା । ବିଛଣାରେ ପଡ଼ିରହିଥାଏ । ଏଣୁ ତେଣୁ ହାଲୁକା ଜିନିଷ ପଢ଼ୁଥାଏ । ଶୋଉଥାଏ ଏବଂ ଆଖି ବୁଜି ଜାଗ୍ରତ ସ୍ୱପ୍ନ ଦେଖୁଥାଏ ବାହାରେ ସୁସ୍ଥ ସୁନ୍ଦର ପୃଥିବୀଟିର ।

ସେଦିନ ସେମିତି ଚିତ୍ ହୋଇ ଆଖି ବୁଜି ପଡ଼ିରହିଥିଲି । ସୁନ୍ଦରୀ ସୁବେଷିଣୀ ସେବା ଚତୁରୀ ସିଷ୍ଟରଟି ମୋ ପ୍ରତି ତାଙ୍କର କର୍ତ୍ତବ୍ୟ ସୁରୁଚି ରୂପେ ସମ୍ପନ୍ନ କରି ଚାଲିଗଲେଣି । ସେହି ସୌମ୍ୟ ଦର୍ଶନ ସହୃଦୟ ଯୁବ ଡାକ୍ତରଟି—ଯେ କି ମୋର ଜଣେ ସୁପାଠକ ଭକ୍ତ, ଯେ ଦିନକୁ ଅନ୍ତତଃ ଛଅଥର ମୋ ପାଖକୁ ଆସି ମୋର ଭଲ ମନ୍ଦ ତଦାରଖ କରିଯାନ୍ତି—ସେ ମଧ ଆସି ମୋ ପାଖରେ କିଛି ସମୟ ବସି ଆଳାପ କରି ଚାଲିଗଲେଣି । ମୁଁ ଆଖି ବୁଜି ଚିତ୍ ହୋଇ ପଡ଼ିଥାଏ ଏବଂ ମନେ ମନେ ଭାବୁଥାଏ - ବାଲ୍ୟକାଳର ଓ ଆଦ୍ୟ ଯୌବନର କେତେ ହାସ୍ୟ ଅଶ୍ରୁ ର ଅଫୁରନ୍ତ ଘଟଣାବଳୀ, କେତେ ଭ୍ରମ, କେତେ ପ୍ରମାଦ, କେତେ ମନ ଦେଣାନେଣା, ମନ ଦିଆନିଆ, କେତେ ପ୍ରତାରଣା, ପୁଣି କେତେ ତ୍ୟାଗ, କେତେ ସମର୍ପଣ, ଭୁଲ, ଅଭୁଲ, ଚିରଭୁଲ କେତେ ମର୍ମସ୍ପର୍ଶୀ ଆବେଗ ଆଉ ପ୍ରବେଗର ବିରାଗ ଆଉ ସଂରାଗର କେତେ କାହାଣୀ ମନ ଭିତରେ ଗୋଟି ଗୋଟି ହୋଇ କେତେ ନାରୀ ପୁରୁଷ ଚଳଚ୍ଚିତ୍ରର ଛବି ଭଳି ଉଭାହୋଇ ପୁଣି ଅନ୍ତରାଳକୁ ଚାଲିଯାଉଥାନ୍ତି । ଏକ ପ୍ରକାର ଭଲ ଲାଗୁଥାଏ । ସ୍ମୃତି ସେଗୁଡ଼ିକ ଦୁଃଖର ହେଉ ବା ସୁଖର ହେଉ—ସେଗୁଡ଼ିକ ଏକାନ୍ତ ଆପଣାର, ନିଜ ସଙ୍ଗେ ଅଙ୍ଗାଙ୍ଗୀ—ନିଜର ହୃଦୟ ସଙ୍ଗେ ଆତ୍ମା ସଙ୍ଗେ ସେମାନେ ମିଶି ଏକ ହୋଇ ଯାଆନ୍ତି । ଜୀବନର ସମସ୍ତ ସାଫଲ୍ୟ ଯେତେ ଆନନ୍ଦ ଦିଏ ନାହିଁ—ସ୍ମୃତି-ଗୁଡ଼ିକ ତା' ଠାରୁ ଖୁବ୍ ବେଶି ଆନନ୍ଦ ଦିଅନ୍ତି । ସ୍ମୃତି ହିଁ ବୁଝାଇଦିଏ ଆପଣାର ସ୍ଥିତିର ମୂଲ୍ୟ ।

ହଠାତ୍ ମୋର ଗୋଡ଼ରେ ଏକ ପ୍ରଚଣ୍ଡ ଝିଙ୍କା ଦେଇ କିଏ ଜଣେ ପାଟି କରି ଉଠିଲା—ଇରେ ଇଏ ହେ ?

ଏଭଳି ସ୍ଥୂଳ ସ୍ପର୍ଶ ଓ କଣ୍ଠସ୍ୱରରେ ମୁଁ ଚମକିପଡ଼ିଲି । ସ୍ପିଷଣ ବିରକ୍ତିର ସହିତ ଆଖି ଖୋଲି ଯାହାକୁ ଦେଖିଲି—ମୋର ମନ ପ୍ରଚଣ୍ଡ ଘୃଣା, ବିରକ୍ତି ଓ କ୍ରୋଧରେ ବିଷେଇ ଉଠିଲା । ରାସ୍କେଲ୍ ସୁନାକର ସାହୁ ମୋ ପାଖରେ ଠିଆହୋଇ ଅତି ଗୋଟାଏ ସ୍ଥୂଳ ମଣିଷ ଭଳି ଦାନ୍ତ ନିକୁଟି କଣ କହୁଛି । ସୁନାକର ସାହୁ ମୋର ସମବୟସୀ—ମୋର ଗାଁ ଆଡ଼ର—ବାଲ୍ୟବନ୍ଧୁ ଓ କଲେଜ ଜୀବନର ସାଥୀ । ମାତ୍ର ବନ୍ଧୁ ଓ ସାଥୀ ଶବ୍ଦ ମୁଁ କେବଳ

ଭଦ୍ରତା ଖାତିରରେ କହୁଛି । ଲୋକଟା ମୋର ବନ୍ଧୁ ନୁହେଁ କି ଶତ୍ରୁ ନୁହେଁ, ଲୋକଟା ମୋର ବାଲ୍ୟକାଳରୁ ଘୃଣାର ପାତ୍ର । ମୋ ବିଚାରରେ ଲୋକଟା ଅତ୍ୟନ୍ତ ସ୍ଥୂଳ ଚିନ୍ତ—କୃପଣ, ସ୍ୱାର୍ଥୀ ଆଉ ଆତ୍ମକୈନ୍ଦ୍ରିକ । ଏଭଳି ଲୋକଙ୍କୁ ମୁଁ ସ୍ୱଭାବତଃ, ଖୁବ୍ ଘୃଣା କରେ । ଯେଉଁମାନେ ଭୁଲ କରିଦେବାର ଆଶଙ୍କାରେ ଜୀବନରେ ଠିକ୍ କଥାଗୁଡ଼ିକ ମଧ୍ୟ କରନ୍ତିନାହିଁ । ଯେଉଁମାନେ ଜୀବନର ଯାତ୍ରାରେ ହାତେ ମାପି ଚାଲନ୍ତି—ସେମାନେ କଣ ଦାନ୍ତ ଚାଲନ୍ତି ? ମୋର ପ୍ରକୃତି ତାର ପ୍ରକୃତିର ସମ୍ପୂର୍ଣ୍ଣ ବିପରୀତ । ମୁଁ ତାଙ୍କୁ ଘୃଣା କରେ—ମାତ୍ର ସେ ବିପ୍ଳବ ମୋର ସବୁ ଆଚରଣକୁ ପିଲାଦିନୁ ସ୍ଥୂଳ ଭାବେ ସମାଲୋଚନା କରିଆସିଛି; ଅଥଚ ଲୋକଟା ଭାବପ୍ରବଣତାରେ ଏତେ କୃପଣ ଯେ ମୋତେ ଘୃଣା ପର୍ଯ୍ୟନ୍ତ କରେନାହିଁ ।

ଗେଡ଼ା ଓ ଡଗଡ଼ା ହୋଇ ବେଢଙ୍ଗିଆ ମଣିଷଟାଏ ଏଇ ସୁନାକର । ମୁଣ୍ଡର ବାଳ ସାମାନ୍ୟ ପାଚିଯାଇଛି । ମାତ୍ର ଦାନ୍ତକ ଏବେ ବି ଠିକ୍ ଅଛି । ତାକୁ ଦେଖିଲେ ମନେ ହେବ—ଏବେ ବି ପିଲାଦିନରୁ ଅଭ୍ୟାସରେ ପଢ଼ିଥିବା ସ୍ୱାସ୍ଥ୍ୟରକ୍ଷାର ସମସ୍ତ ନିୟମ ସେ ମାନିଆସୁଛି । ମୁଁ ଏ ନୀତିକୁ ଘୃଣା କରେ । ମଣିଷର ସ୍ୱାସ୍ଥ୍ୟ ଗୋଟାଏ କେନାଲ୍ ନ ହୋଇ ଗୋଟାଏ ନଈ ଭଳି ହେଉ— ଏହା ମୁଁ ଚାହେଁ । ଏହା କେତେବେଳେ ଦିଶୁଥିବ ଶ୍ରାବଣର ବନ୍ୟାକୁଳିତା ନଦୀ ଭଳି ଭରପୂର ସ୍ରୋତମୁଖର । କେତେବେଳେ ଦିଶୁଥିବ ଶରତର ନୀଳନୀର ବେଣୀ ଜୁଡ଼ା ନର୍ତ୍ତକୀଟିଏ ଭଳି । ପୁଣି କେତେବେଳେ ବା ଦିଶୁଥିବ ବୈଶାଖର ନୀରସ୍ୱନା ଉତ୍ତପ୍ତ ବାଲୁକାବକ୍ଷା ଧାରମାତ୍ର ସମ୍ବଳା ନଦୀଟିଏ ଭଳି । ପ୍ରକୃତିର ବିଧାନ ମଧ୍ୟ ତଦ୍ରୂପ । ସେଥିପାଇଁ ପ୍ରକୃତି ସୁନ୍ଦର । ମାତ୍ର ବିପ୍ଳବ ସୁନାକର ସାହୁର ସ୍ୱାସ୍ଥ୍ୟ କୈଶୋର ଯୌବନ ଆଉ ପ୍ରୌଢ଼ତ୍ୱରେ ବି ସେହି ଏକାଭଳି ରହିଛି । ମଣିଷର ସ୍ୱାସ୍ଥ୍ୟ ଗୋଟାଏ ବନ୍ଧଘେରା ପୁଷ୍କରଣୀ ନା କେନାଲ । ତାର ନୈତିକ ଭାବଗତ ଜୀବନ ମଧ୍ୟ କଣ ତଦ୍ରୂପ ବନ୍ଧାବନ୍ଧର ବ୍ୟାପାର ? ଛାଡ଼ ଛାଡ଼—ସେଇ ବିପ୍ଳବ ସୁନାକରଟା କାହିଁକି ଆସିଲା ଏତେବେଳେ ? ବିରକ୍ତି ଓ ଘୃଣାକୁ ସଂଯତ କରି କହିଲି—ବସ୍-ବସ୍ ! କିରେ ? ବହୁତ ଦିନ ହେଲା ତ ଦେଖାନାହିଁ । କେମିତି ଅଛୁ ?

ସୁନାକର ମୋ ବେଡ୍ ପାଖ ଷ୍ଟୁଲଟିରେ ବସିପଡ଼ିଲା । ତା' ମୁହଁରେ ସବୁବେଳେ ଗୋଟାଏ ସ୍ଥୂଳ ହସ ଲାଗି ରହିଥାଏ; ଯୋଉଟା ଦେଖିଲେ ମୁଁ ଚିଡ଼ିଉଠେ । ସେ ସେମିତି ହସି ହସି କହିଲା—ଭଲ ଅଛି ଭାଇ ! ଆମେ ତ ଆଉ ତୁମ ଭଳିଆ ବଡ଼ଲୋକ ନୋହୁଁ । ତୁମେ ତ ହେଲ ଭାଇ ସ୍ୱନାମଧନ୍ୟ କବି, ଲେଖକ, ବକ୍ତା, ସାହିତ୍ୟିକ । ତୁମର ଭଲ ଅଛି, ମନ୍ଦ ବି ଅଛି । ଆମର କଣ ? ଆମର ସବୁ ଭଲ । ସବୁଦିନେ ଏକା ଭଳି ।

ତୋର ସ୍ୱାସ୍ଥ୍ୟ ତ ଖୁବ୍ ଭଲ ଅଛି ? ତୁ ତ ମୋ ଠାରୁ ତରୁଣ ଦିଶୁଛୁ ସୁନାକର !

ସୁନାକର ସେମିତି ହସି ହସି କହିଲା—ତା' ଦେଖାଯିବନି କେମିତି ଜୀବନ ? ସଂଯମ ହେଲା ଅସଲ । ଜୀବନସାରା ତ ତୁମେମାନେ ବଡ଼ ମଣିଷ ହେବ ବୋଲି ଯେଉଁତାଇ କରି

ଜୀବନକୁ ନେଇ ଖେଳିଲ । ତୁମେମାନେ ରୋଗରେ ପଡ଼ିବନି ତ ଅଉ କିଏ ପଡ଼ିବ ? ଜୀବନରେ ଖାଲି ସ୍ୱାସ୍ଥ୍ୟ ହିଁ ବଡ଼କଥା । ଆଉ ସବୁକଥା ତୁଚ୍ଛ । ତୁ ଆଜି ଏତେ ନାମ, ଖ୍ୟାତି ଅର୍ଜିଛୁ—ହଁ ମୁଁ ମାନୁଛି—ତୁ ଜଣେ ବଡ଼ ବକ୍ତା, ସାହିତ୍ୟିକ, ସମାଜ ସେବକ, ଜ୍ଞାନୀ, ଆଉ ସବୁକିଛି । ଆମେ ବୁଝିଲେ ତୋ ତୁଳନାରେ କିଛି ନୋହୁଁ । କିନ୍ତୁ କଣ ହେବ ? କଣ ମିଳିବ ସେଥିରୁ ? ସ୍ୱାସ୍ଥ୍ୟ ଯଦି ନାହିଁ—ତେବେ କିଛି ନାହିଁ । ତୋର ଦାନ୍ତ ପଡ଼ିଲାଣି, ଏଣୁ ତେଣୁ ରୋଗ ତ ତୋତେ ସବୁବେଳେ ଲାଗିରହିଛି । ବୁଢ଼ା ଭଳି ଦିଶିଲୁଣି । ମାତ୍ର ଏଇ ଦେଖ୍—ଗୋଟାଏ ଦାନ୍ତ ବି ମୋର ପଡ଼ିନାହିଁ । ସେମିତି ଚକ୍‌ଚକ୍‌-ମଜଭୁତ୍ । ପାନ ନାହିଁ —ସିଗ୍ରେଟ ନାହିଁ—ଚା’ କଫି ନାହିଁ । ସକାଳୁ ଖାଏ ଗଜାମୁଗ ନଡ଼ିଆ, ଦି’ପ୍ରହରେ ଖାଏ ଭାତ ଡାଲିମା ଶାଗ—ଆଉ ରାତିରେ ସାମାନ୍ୟ କେତେଖଣ୍ଡ ରୋଟି ଗ୍ଲାସେ ଦୁଧ ଆଉ କିଛି ପରିବା ସିଝା । ମାଛ ମାଂସ ଅଣ୍ଡା କିଛି ଛୁଏଁ ନା ମୁଁ । ସେହି ଯୌବନ ଆରମ୍ଭରୁ ଏ ଅଭ୍ୟାସ —ଏମିତି ଏ ଚାଲିଛି ଆଜିଯାଏ । ହୋଟେଲରେ ଖାଇବ ନାହିଁ । ରାତି ଅନିଦ୍ରା ହେବ ନାହିଁ —ଦୁଶ୍ଚିନ୍ତା କରିବନାହିଁ । ଏଣୁ ତେଣୁ ଆଶା ନିରାଶାର ଜାଲରେ ପଡ଼ିବ ନାହିଁ । ପ୍ରତିଦିନ ସକାଳ ଆଉ ସନ୍ଧ୍ୟାରେ ଚାରି କିଲୋମିଟର ରାସ୍ତା ପାଦରେ ବୁଲିବ । ଏଣେ ପୁଣି ସୁଖରେ ଉତ୍‌ଫୁଲ୍ଲ ହେବ ନାହିଁ କି ଦୁଃଖରେ କାତର ହେବ ନାହିଁ । ଏଇ ହେଲା ମୋର ସଂଯମ । ମୋର ଜୀବନର ନିତ୍ୟକର୍ମ ଅଭ୍ୟାସ । ରୋଗ ପଶିବ କୋଉବାଟେ କହ ? ଭୋଗ ଯେଉଁଠି ରୋଗ ସେଇଠି ।

ମୁଁ ତା’ କଥା ଶୁଣି ମନେ ମନେ ଖୁବ୍ ଚିଡ଼ି ଉଠିଥାଏ । ଭାବୁଥାଏ—ତୋ ଭଳି ସଂଯମୀ ମଣିଷ ପଶୁଠାରୁ ମଧ୍ୟ ଅଧମ । କାକର ଆଉ ଥଣ୍ଡା ଲାଗିବା ଭୟରେ ଯେଉଁ ଅଧମ ପୂର୍ଣ୍ଣିମୀ ଚନ୍ଦ୍ରକୁ ଆଖିବୁଜିଦେଇ ରାତି ନଅଟାବେଳୁ ଘରେ କବାଟ କିଳି ଶୋଇବ, ସେ ଶହେ ବର୍ଷ ବଞ୍ଚିଲେ ଲାଭ କଣ ? ସଂଯମ ବୋଲି ଯାହା କୁହାଯାଏ, ତା ଯୋଗୀମାନଙ୍କର ଭୂଷଣ । ସୁନାକର ସାହୁ ଭଳି ସଂସାରର ଲୋକମାନଙ୍କ ପକ୍ଷରେ ସଂଯମ ହେଉଛି—ଅସଲରେ ଗୋଟାଏ ହିସାବୀ ବୁଦ୍ଧି । ମୁଁ ମଣିଷର ଏଇ ହିସାବୀପଣିଆକୁ ଘୋର ଘୃଣାକରେ । ଏମାନେ ସ୍ତ୍ରୀ ପୁତ୍ରଙ୍କଠାରୁ ଭଗବାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ସାଙ୍ଗେ ହିସାବୀ ବୁଦ୍ଧିରେ ସମ୍ପର୍କ ରଖିଥାନ୍ତି । ଏମାନେ ପଣ୍ୟ । ମାତ୍ର ମୋର ମନକଥା ମନରେ ରଖି ପ୍ରକାଶ୍ୟରେ କହିଲି— ସୁନାକର ! ତୋର ସ୍ତ୍ରୀ ସଙ୍ଗେ ତୋର କେବେ କଳିକଜିଆ ହୁଏନାହିଁ ?

ସୁନାକର ହସିଲା । କହିଲା—ଆଜିଯାଏ ଭାଇ ସତକହୁଛି—ମୋ ବାହାଘର ଦିନଠାରୁ ଦିନେ ସୁଦ୍ଧା ବି ତା’ର ମୋର ଅପଡ଼ ହୋଇନାହିଁ—ମୁହଁ ଶୁଖାଶୁଖି ହୋଇନାହିଁ— ଦିନେ ହେଲେ ବି କଳିକଜିଆ ହୋଇନାହିଁ । କଳିକଜିଆ କାହିଁକି ହେବ ?

ମୁଁ କହିଲି—କେମିତି ହେବନାହିଁ ? ତା’ ମନ ଅଲଗା—ତୋ ମନ ଅଲଗା । ପୃଥକ୍ ବ୍ୟକ୍ତି—ପୃଥକ୍ ବ୍ୟକ୍ତିତ୍ୱ । ସଂଘର୍ଷ ହେବନାହିଁ ? ବଡ଼ ବିଚିତ୍ର କଥା କହୁଛୁ ।

ସୁନାକର ଇତିମଧ୍ୟରେ ମୋର ଫଲଷ୍ଟୁପରୁ ଗୋଟିଏ ପୃଥୁଳ ଆପେଲ୍ ଉଠାଇ ଖାଇଚାଲିଲା; ଏବଂ କହିଚାଲିଲା—ପୃଥକ୍ ସତ୍ୟ । ମାତ୍ର ଦାମ୍ପତ୍ୟ ଜୀବନର ମଧ୍ୟ ଗୋଟାଏ ସଂଯତ ରୀତି ଅଛି । ସ୍ତ୍ରୀ ଯାହା ଚାହେଁ—ମୁଁ ସେଥିରେ ବାଧାଦିଏ ନାହିଁ । ଆଉ ମୋର ତ ଭାଇ କିଛି ବେଆଡ଼ା ଅଭ୍ୟାସ ନାହିଁ । ସ୍ତ୍ରୀ ରାଗିବ କାହିଁକି ? ତା'ଛଡ଼ା—ମୋର ଚରିତ୍ର ତ ଭାଇ ଜାଣ । ପିଲାଦିନୁଁ ତୁମ୍ଭେମାନେ ଚରିତ୍ରଟିକୁ ବିଗାଡ଼ିଛ । ତେଣୁ ତୁମ୍ଭମାନଙ୍କର ସ୍ତ୍ରୀମାନେ ତାର ସୁଯୋଗ ନିଅନ୍ତି ।

ସୁନାକର ନିର୍ବିକାରରେ ଫଲଟିକୁ ଅଳ୍ପ ସମୟ ମଧ୍ୟରେ ଖାଇ ଶେଷ କରିଦେଲା । ମୁଁ କହିଲି—ଆଉ ଗୋଟାଏ ଖାଅ । ସେ ମଧ୍ୟ ନିର୍ବିକାରରେ ଆଉ ଗୋଟିଏ ଫଲ ଆଣି ଖାଇ-ଚାଲିଲା ଓ କହିଚାଲିଲା—ଏ ଫଲରେ କଣ ଅଛି ଭାଇ ? ଏ ଖାଲି ତୁମମାନଙ୍କ ଭଳି ବଡ଼ଲୋକଙ୍କର ବିଳାସୀ ଖିଆଲ । ଭିଟାମିନ୍ କଣ ଏଥିରେ ବେଶୀ ଅଛି ? ଆମର ନଡ଼ିଆ, ପଣସ, ପିଜୁଳି, ଆମ୍ବ—ଏସବୁ ହେଲ ଅସଲ ଭିଟାମିନ୍ ଫଲ । ତୁମେମାନେ ଏ ଦେଶୀ ଫଲ ଛାଡ଼ି ଏସବୁ ସେଓ, ନାସପାତି ଖାଉଛ ଆଉ ରୋଗ କରୁଛ ।

ସୁନାକର ପ୍ରାୟ ଦୁଇମିନିଟରେ ଗୋଟିଏ ଲେଖାଁ ଆପେଲ ଖାଇ ଶେଷ କରିଦେଉଥାଏ । ଏଥର ମୁଁ ନିଜେ ତା'ହାତକୁ ଗୋଟିଏ ଲେଖାଁ ନାସପାତି ବା ଆପେଲ ବଢ଼ାଇ ଦେଉଥାଏ । ମୋ ଭିତରେ ତା'ପ୍ରତି ଗୋଟେ ହିଂସ୍ରତା ବଢ଼ି ଯାଉଥାଏ । ରାସ୍କେଲ ଗୋଟାଏ ପଶୁ । ରୋଗୀ ବନ୍ଧୁକୁ ଦେଖିବାକୁ ଆସିଛୁ । ହାତରେ ଗୋଟାଏ ଅଙ୍ଗୁର କୋଳି ବି ଆଣିନି, ଏତେ କଂଜୁସ୍ ! ଅଥଚ ରୋଗୀର ଫଲ ସବୁ ନିର୍ଦ୍ୱନ୍ଦ୍ୱ ନିର୍ବିକାରରେ ଖାଇଚାଲିଛି—ଆଉ ସଂଯମ ଉପରେ ଅନର୍ଗଳ ଗପିଚାଲିଛି । ଲୋକଟା ପଶୁଠାରୁ ହୀନ । ଏହିଭଳି ଏକପ୍ରକାର ବିଦ୍ୱେଷପରାୟଣ ହୋଇ ମୁଁ ସେଲ୍ଫରୁ ଗୋଟାକ ପରେ ଗୋଟାଏ ଲେଖାଁ ଫଲ ତା ହାତକୁ ହିଂସ୍ରଭାବେ ବଢ଼ାଇ ଲାଗିଥାଏ ଓ ସେ ସେତିକେ ପଶୁଭଳି ନିର୍ବିଘ୍ନରେ ଗିଳିଚାଲିଥାଏ । ମୋଟରେ ଛଅଟି ଫଲ ଖାଇସାରି ସେ ମୁହଁ ପୋଛିଲା । ମୁଁ ଆଉ ଗୋଟାଏ ନାସ୍‌ପାତି ତା' ହାତକୁ ବଢ଼ାନ୍ତେ ସେ ମନାକରିଦେଲା ।

—ନାଇଁ ଭାଇ ସେତିକି । ଲୋଭରେ ବେଶି ଗୁଡ଼ାଏ ଖାଇଦେବା ଅନୁଚିତ । ମାହାଳିଆ ମିଳୁଛି ବୋଲି ସବୁ ଖାଇଦେବ—ଏମିତି ଲୋକ ମୁଁ ନୁହେଁ । ସଂଯମ ହେଲ ବଡ଼ କଥା । ହୋଟେଲରେ ତ ଖାଇବ ନାହିଁ । ତା'ଛଡ଼ା ଆଜି ଏକାଦଶୀ—ଅନ୍ନାହାର ନିଷେଧ । ମୁଁ ଆଜି ଫଲ ଖାଇଥାଏ ।

ଏଣିକି ମୋର ଘୃଣା ଓ ବିଦ୍ୱେଷ ପରିବର୍ତ୍ତେ ମନଭିତରେ ଏକ ହାସ୍ୟକର କୌତୁକ-ଭାବ ଖେଳିଲାଣି । ସୁନାକର ପ୍ରତି ମନ କେମିତି ନରମି ଆସିଲାଣି । ଚମତ୍କାର ଏ ସୃଷ୍ଟି, ଚମତ୍କାର ଏ ସୃଷ୍ଟିର ମଣିଷମାନେ ! ସୁନାକର ମଧ୍ୟ ଚମତ୍କାର ! ମୋର ବିଦ୍ରୂପ ଯହୁଁ ଯହୁଁ

ବଡ଼୍ ଛୁ—ସବୁ ଏମିତ ଚମତ୍କାର ଲାଗୁଛି—କୌତୁକ ଲାଗୁଛି । କାହା ଉପରେ ଆଉ ରାଗ ବା ଘୃଣା ଆସୁନାହିଁ । କାହିଁକି ରାଗିବ ? କାହିଁକି ଘୃଣା କରିବ ? ଏ ସୃଷ୍ଟି ଏବଂବିଧ ! ଏହାର ମଣିଷମାନେ ମଧ୍ୟ ଏବଂବିଧ ! ଏତେବେଳକୁ ମୋ ମୁହଁରୁ ଗାମ୍ଭୀର୍ଯ୍ୟ କଟିଗଲା ! ମୋର ମୁହଁରେ ଏକ ପ୍ରଶାନ୍ତ କୌତୁକ ଝଲମଲ କରିଉଠିଲା । ମୁଁ ସୁନାକରର କାନ୍ଧରେ ସ୍ନେହର ହାତ ରଖି କହିଲି—ସୁନାକର ! ତୁ କୁଆଡ଼େ ଆସିଥିଲୁ ?

ସୁନାକର କହିଲା—ଆସିଥିଲି ଭାଇ, ପୁଅ ପାଇଁ ପାଞ୍ଚୀଟିଏ ଠିକ୍ ହୋଇଛି ଯେ ତାକୁ ଦେଖିବା ପାଇଁ । ପାଞ୍ଚୀଟି ଦେଖିବାକୁ ଯିବି ସନ୍ଧ୍ୟାବେଳକୁ ।

—ଏଠିକି କେମିତି ଆସିଲୁ ? ପୁଅ ତୋର କେଉଁଠି ? କଣ କରେ ?

—ଆରେ, ତୁ ଜାଣିନୁ ? ସେଇ ତ ମୋତେ ତୋ କଥା କହିଲା । ସେ ତ ତୋର ବଡ଼ ଭକ୍ତ । ସେ ପରା ଏଇଠି ହାଉସ୍-ସର୍ଜନ ! ତୋର ଦେଖାଶୁଣା କରୁଛି—ତୁ ଚିହ୍ନିନୁ ? ଡା: ପରିଜାଙ୍କର ଖୁବ୍ ପ୍ରିୟ ଶିଷ୍ୟ ସେ !

ମୋର ଆଖି ଖସିପଡ଼ିଲା । ଯେଉଁ ସୌମ୍ୟ ସୁନ୍ଦର, ନମ୍ରସ୍ୱଭାବ ଯୁବ ଡାକ୍ତରଟି ପ୍ରତିଦିନ ପ୍ରାୟ ଛଅଥର ମୋ ପାଖକୁ ଆସେ—ମୋର ଦେହ-ମୁଣ୍ଡରେ ହାତ ବୁଲାଇ ଦିଏ—ଯାହାର କୋମଳ ସ୍ପର୍ଶରେ ମୁଁ ଏକ ଅଲୌକିକ ବାତ୍ସଲ୍ୟାନନ୍ଦର ଅନୁଭୂତି ପାଏ—ଯେ ବେଳେ-ବେଳେ ମୋର ଗଳ୍ପ ଉପନ୍ୟାସ ସମ୍ପର୍କରେ ଖୁବ୍ ସଯତ୍ନ ଆଉ ବିନୀତ ସନ୍ତର୍ପଣର ସହିତ କେତେ ରହସ୍ୟଜନକ ପ୍ରଶ୍ନଦେଇ ପଚାରେ—ଆଉ ଯେ ମତେ ବେଳେବେଳେ ଧୀର ଗମ୍ଭୀର, ନରମ ନମନୀୟ ଭାବେ ଚାହିଁରହିଲେ—ଯୋଉ ଚାହାଣିରେ ଝରିପଡ଼ୁଥାଏ ଭକ୍ତି, ଶ୍ରଦ୍ଧା, ବିଶ୍ୱାସ, ଆଉ ପ୍ରଶସ୍ତିର ମଧୁର ଏବଂ ଶୀତଳ ଜ୍ୟୋତ୍ସ୍ନା ଭଳି ଦୀପ୍ତି—ସେହି—ସେହି ତା' ହେଲେ ଏହି ପାଷଣ୍ଡ ସୁନାକର ସାହୁର ପୁଅ ? ଏଡ଼େ କୋମଳ, ଏଡ଼େ ହୃଦୟବାନ୍, ଏଡ଼େ ସୌନ୍ଦର୍ଯ୍ୟବାନ୍ ପିଲା ଏଭଳି ପାଷଣ୍ଡଠାରୁ ଜନ୍ମ ନେଇପାରେ ? ମୋର ମନ ଆଉ ଥରେ ପୁଲକିତ ହୋଇ ଉଠିଲା । ମୋର ମନ ଆଉ ଥରେ ଉଦାର ହୋଇଗଲା । ମୁଁ ସୁନାକରକୁ କୁଣ୍ଢାଇ ଧରିଲି । ମୁଁ ପ୍ରହ୍ଲାଦ ପ୍ରତି ମୁଗ୍ଧ ହୋଇ ତାର ବାପ ହିରଣ୍ୟକଶିପୁକୁ ମଧ୍ୟ କୁଣ୍ଢାଇ ଧରିଲି ।

ମାତ୍ର ଏ ବିଗଳିତ ଆଲିଙ୍ଗନରେ ସୁନାକରର ଦେହରେ ବା ମନରେ କୌଣସି ପ୍ରକାର ପୃଥକ୍ ପ୍ରତିକ୍ରିୟା ଦେଖାଗଲା ନାହିଁ । ଭାବପ୍ରବଣତା ତ ତାର ନାହିଁ । ସେ ବରଂ ପୂର୍ବଭଳି ହସୁଥାଏ ଏବଂ ମୋର ହଠାତ୍ ଆଲିଙ୍ଗନକୁ ମୋ ଭଳି ଜଣେ ଭାବପ୍ରବଣ ମଣିଷର ସ୍ୱାଭାବିକ ଗୁଣ ବୋଲି, ଖୁବ୍ ସ୍ୱାଭାବିକ ଭାବେ ଧରିନେଇଥାଏ । ମାତ୍ର ମୁଁ ସେ ଦିଗକୁ ଆଉ ଦୃଷ୍ଟି ନଦେଇ ତାକୁ କହିଲି—ଭଲ ପୁଅଟିଏ ତୋର ସୁନାକର ! ଡା: ବିଜୟକୁମାର ସାହୁ ତୋର ପୁଅ ବୋଲି ମୁଁ ଜାଣି ନଥିଲି । ତୁ ବଡ଼ ଭାଗ୍ୟବାନ୍—ନହେଲେ ଏପରି ସୁପୁତ୍ର ପାଇବା ସହଜ ନୁହେଁ ।

ସୁନାକର ସେଥିରେ ମଧ୍ୟ ବିଚଳିତ ନହୋଇ କହିଲା—ଭାଇ ! ପୁଅ ଭଲ ହେବାରେ ବା ମନ୍ଦ ହେବାରେ କାହାର ହାତ ଅଛି କହ ? ସେମାନେ ତାଙ୍କର ଭାଗ୍ୟ ଆଣି ଆସିଛନ୍ତି । ଭଲ କଲେ ଭଲ ହେବେ—ମନ୍ଦ କଲେ ମନ୍ଦ ହେବେ । ବିଜୟ ଭଲ ପିଲା ହିଁ ମୁଁ ମାନୁଛି; ମାତ୍ର ସଂଯମର ଅଭାବ । ଡାକ୍ତର ହୋଇଛି—ଏଣେ ରାତି ଅନିଦ୍ରା ହବ—ଦିନକୁ ପାଞ୍ଚଥର ଚାହା ଖାଇବ—ଏଣୁତେଣୁ ନଭେଲ ନାଟକ ବି ପଢ଼ୁଥିବାର ମୁଁ ତେର ଥର ଦେଖିଛି । ଏସବୁ ଭଲ ନୁହେଁ । ତେବେ ମୋର କଣ ଅଛି ? ଏଣିକି ସେ ବଡ଼ ହେଲାଣି । ତା' କଥା ସେ ବୁଝିବ ।

ମୁଁ କହିଲି—ସୁନାକର ! ତୋ ପୁଅ ଲାଗି କୋଉଠି ବୋହୂ ଠିକ୍ ହୋଇଛି ? ସୁଅ ଠିକ୍ କରିଛୁ ନା ତୁ ?

ସୁନାକର ଖୁବ୍ ଗୁରୁତ୍ୱପୂର୍ଣ୍ଣ ଢଙ୍ଗରେ କହିଲା—କଣ କହିଲୁ ? ସୁନାକର ସାହୁର ପୁଅ ହୋଇ ସେ ନିଜେ ତା ପାଇଁ ବୋହୂ ଠିକ୍ କରିବ ? ମୁଁ ଏ ଅସଂଯମ ସହ୍ୟ କରି ପାରିବି ନାହିଁ । ସେ କଥା ନୁହଁ । ଗୋଟାଏ ପ୍ରସ୍ତାବ ଆସିଛି । ମୁଁ ଭାବୁଛି—ଝିଅଟିକୁ ଦେଖିଦେଇ ଯିବି । ଝିଅଟିର ବାପ ଜଣେ ଓକିଲ—ବିମାନ ବିହାରୀ ରାଓଙ୍କୁ ଜାଣୁ ?

ମୁଁ ଆଉ ଏଣିକି ସୁନାକରକୁ କୁହାଇ ଦେଲି ନାହିଁ । ତାକୁ ଓଲଟି ପ୍ରଶ୍ନକଲି—ତୁ ଖ୍ୟାତିମାନ ସାହିତ୍ୟିକ ଜୀବନାନନ୍ଦ ମହାପାତ୍ରଙ୍କୁ ଜାଣୁ ?

ସୁନାକର ହସିଲା । କହିଲା—ମଲା ! ନିଜ ନାଁ କହୁଛୁ ।

ମୁଁ କହିଲି—ହଁ, ସେହି ଜୀବନାନନ୍ଦ ମହାପାତ୍ରଙ୍କର ଜ୍ୟେଷ୍ଠା କନ୍ୟା ଆୟୁଷ୍ମତୀ ରୁଚିରା ପ୍ରିୟଦର୍ଶିନୀ, ଯେ କି ଏ ବର୍ଷ ଇଂରାଜୀରେ ଫାଷ୍ଟକ୍ଲାସ ପାଇ ଏମ. ଏ. ପାସ କରିଛି—ତା ସହିତ ମହା-ସଂଯମୀ ପୁରୁଷ ଶ୍ରୀଯୁକ୍ତ ସୁନାକର ସାହୁଙ୍କର ସୌମ୍ୟଦର୍ଶନ ସହୃଦୟ ଜ୍ୟେଷ୍ଠ ପୁତ୍ର ଆୟୁଷ୍ମାନ୍ ଡା: ବିଜୟ କୁମାର ସାହୁଙ୍କର ଶୁଭ ପରିଣୟ ଏହି ଆସନ୍ତା ଏପ୍ରିଲ ମାସରେ ଅନୁଷ୍ଠିତ ହେଲେ ତୋର ଆପତ୍ତି ଅଛି କି ? ବିଜୟ କୁମାର ମୋର ଝିଅକୁ ଏଠି ବହୁଥର ଦେଖିଛି । ତାର ଆପତ୍ତି ନଥିବ, ମୁଁ ଜାଣେ । ତୋର ଆପତ୍ତି ଅଛି କି ?

ସୁନାକର ହସିଲା; ମାତ୍ର ଆଗ ଭଳି ନୁହଁ । ବେଶ୍ ହସିଲା । ସେ ହସ ସମ୍ମତି-ସୂଚକ । ଏହି ସମୟରେ ତାର ସୌମ୍ୟଦର୍ଶନ ପୁଅ ଡା. ବିଜୟ କୁମାର ସେଠାକୁ ଆସିଯାଇଥିଲେ । ତାଙ୍କ ହାତରେ ଝୁଡ଼ିଏ ଫଳ ଆଉ ଗୋଟିଏ ବଡ଼ ଗୋଲାପର ତୋଡ଼ା । ସେ ଆମ୍ଭମାନଙ୍କର ଶେଷ କଥାଗୁଡ଼ିକ ଭଲ ଭାବେ ଶୁଣିଥିଲେ । ତାଙ୍କ ମୁହଁରେ ଏକ କୋମଳ ଆସ୍ଥାଶୀଳ ଆନନ୍ଦର ଆଭା ଉକୁଟି ଉଠିଥିଲା । ସେ ଖୁବ୍ ଧୀର ଗମ୍ଭୀର ଭାବେ ଫଳତକ ଝୁଡ଼ିରୁ ବାହାର କରି ସେଲଫ୍‌ରେ ରଖିଲେ । ଗୋଲାପର ତୋଡାଟି ମୋ ହାତକୁ ବଢ଼ାଇ-ଦେଇ ମୋତେ ନମସ୍କାର କଲେ ଓ କୋମଳ କଣ୍ଠରେ ପଚାରିଲେ—କିପରି ଅଛନ୍ତି ?

ମୁଁ ତାକୁ ମୋ ହାତରେ ଗୁଡ଼ାଇ ଧରି ଗାଢ଼ ବାତ୍ସଲ୍ୟ-ମମତାରେ କହିଲି—ଭଲ ଅଛୁ, ଖୁବ୍ ଭଲ ଅଛୁ ।

ସୁନାକର ଚୁପ୍‌ଚାପ ବସିରହିଥାଏ । ମୁଁ ତା ମୁଅକୁ ଓ୍ଵାଡ଼ିଦେଇ ତା ଉଦ୍ଦେଶ୍ୟରେ କହିଲି—ତା' ହେଲେ ଆଜି ଚାଲ ସନ୍ଧ୍ୟାରେ ଆମ ଘରକୁ ।

ସୁନାକର ହସିଲା । କହିଲା—ହଁ ଭାଇ, ଯିବି । ମାତ୍ର ଆଜି ନୁହଁ । ଆଜି ଏକାଦଶୀଟା —ନକ୍ଷଲା ଦିନ । ଆସନ୍ତା କାଲି ସକାଳେ ନିଶ୍ଚୟ ଯିବି । ଆଉ ଯିବାରେ କଣ ଅଛି ଭାଇ ? ମୋର ଆଉ କିଛି ଆପତ୍ତି ନାହିଁ । ତେବେ କାଲି ସକାଳେ ନିଶ୍ଚୟ ଯିବି ।

ମୁଁ ଆଉ କିଛି କହିଲି ନାହିଁ । କେବଳ ମନେ ମନେ ଏତିକି ଭାବିଲି—ଜୀବନରେ ବହୁ ଆକସ୍ମିକତା ଓ ଅଘଟଣ ଦେଖିଛି । ଆଜିର ଏ ଅଘଟଣ ଅପୂର୍ବ—ଅପୂର୍ବ !! ମୋର ମନ ଘରକୁ ଫେରିଯିବାକୁ ଛଟପଟ ହେଲା । ମୁଁ ତ ଆଉ ସୁନାକର ଭଳି ଧୀର ଆଉ ସଂଯତ ବ୍ୟକ୍ତି ନୁହଁ !!! ଶୁଭସ୍ୟ ଶୀଘ୍ରମ୍ ।

□□□

# ରାଜଧାନୀର ଗୋଟିଏ ପୃଷ୍ଠା

ଆବୁବକର୍ ପେଡ଼ାଲ୍ ମାରି ମାରି ହୟରାନ୍ତ ହୋଇଗଲାଣି । ମାତ୍ର ସାଇକେଲ୍‌ର ଚକ ଆଉ ଗଡ଼ୁନି । ଏଣେ ରାସ୍ତା ପଡ଼ିଛି ଉଠାଣି—ପୁଣି ଆଗମୁହାଁ ଦକ୍ଷିଣା ପବନ । ତା'ଛଡ଼ା ଏ ସାଇକେଲ ! ଆଗରୁ ସେ ଯେତେବେଳେ ପହିଲି ପହିଲି ଅମୁନ୍ ଚାଚା ସାଙ୍ଗେ ଅଣ୍ଡା ବେପାର ଆରମ୍ଭ କଲା—ସେତେବେଳେ ସେଇ ଅମୁନ୍ ଚାଚା ତା'ର ପୁରୁଣା ସାଇକେଲଟା ତାକୁ ବିକ୍ରି କରି ଦେଇଥିଲା । କହିଥିଲା—"ଦେଖ ଆବୁ ! ତତେ ଷାଠିଏ ରୁପିଆରେ ଏ ଗାଡ଼ି ବିକୁଛି । ଲେକିନ୍ ଏ ଗାଡ଼ି କାପିଟାଲ୍ ସାଇକେଲ ଦୋକାନରେ ବିକିଲେ ଅଶୀ ରୁପିୟାରୁ କମ୍‌ତିରେ କଟିବ ନାଇ । ଏ ପୁରାନା କମ୍ପାନିକା ଗାଡ଼ି, ଖାଣ୍ଟି ବିଲାତି ମାଲ୍ ଅଛି ।"

ସେଇ ସାଇକେଲ୍‌ରେ ଦୁଇବର୍ଷ କାଳ ଅଣ୍ଡା ବେପାର ଚଳାଇଛି ଆବୁବକର୍ । ଅଣ୍ଡା ବେପାରରେ ବେଶ୍ ଦୁଇପଇସା ଲାଭ ହେଲା । ଏଣେ କାପିଟେଲ୍‌ରେ ଘନ ଘନ ଚାଇନା ହୋଟେଲ ବି ଖୋଲିଲା । ହର୍‌ରୋଜ ଦରକାର ହେଲା ମୁରୁଗୀ । ଅମୁନ୍ ଚାଚା ସେତେବେଳକୁ କାପିଟାଲ୍‌ରେ ଛେଳି, ମେଣ୍ଢା, ଅଣ୍ଡା ଆଉ ମୁରୁଗୀର ଦଲାଲି ବେପାର କଲାଣି । ସେ ଆଉ ଦଉଡ଼ଧାପଡ଼ କରି ପାରୁ ନ ଥିଲା, ତାକୁ ଶୁଆସ୍ ବେମାରି ଆଉ ବାତେର ବି ଧରିଲା । ସେଇ ଅମୁନ୍ ଚାଚା କହିଥିଲା—"ଆରେ ଆବୁ ! ଛୁଛା ଅଣ୍ଡା ବେପାର୍‌ରେ ଆଉ ବେଶୀ ଫାୟଦା ନେହିଁ ମିଲେଗା । ଆଜ୍‌କାଲ୍ କାପିଟାଲ୍‌ମେ ଘର୍ ଘର୍ ମୁରୁଗୀ ଅଣ୍ଡା ଦେତେ ହେଁ । ତୁମ୍ ଅଣ୍ଡାକା ସାଥ୍ କୁଛ୍ ମୁରୁଗୀ ମୋଫସଲ୍ ସେ ଆନ୍ କର ଚାଇନା ହୋଟେଲ୍ ମେ ବିକୋ ।"

ଆବୁବକର୍ ସଡକୁସଡ ସାଇକେଲ୍‌ରେ ଅଣ୍ଡା ଝୁଡ଼ି ସାଙ୍ଗେ କେତୋଟା ମୁରୁଗୀ ମଧ୍ୟ ଗୋଟେ ଝୁଡ଼ିରେ ପୁରାଇ କାରିଅର୍‌ରେ ତା' ଉପର ତା' ଉପର ରଖି ରାଜଧାନୀ ହାଟକୁ ଆସେ । ଲାଭ ହେଲା ସଡକୁସଡ ଚାରିଗୁଣା । ମଫସଲ୍ ଅଞ୍ଚଳରେ ଯେତେବେଳେ କୁକୁଡ଼ା ହଇଜା ହେଲା ସେତିକବେଳେ କୁକୁଡ଼ା ଗୋଟାକ ଟଙ୍କାଏ ଦି ଟଙ୍କାରେ କିଣି ସେ ଟାଉନ୍‌ରେ ଚାଇନା ହୋଟେଲ୍‌ରେ ପାଞ୍ଚ ଛଅ ଟଙ୍କାରେ ବିକିଲା । ଟଙ୍କା ପାଞ୍ଚଶ ସେଇ ମାସେ ଦୁଇମାସ ଭିତରେ କମେଇଦେଲା ଆବୁବକର୍ । ସେତିକବେଳେ ତା'ର ସଉକ୍ ହୋଇଥିଲା ନୂଆ ଗୋଟେ ଚକ୍‌ଚକିଆ ସାଇକେଲ୍ କିଣିବ । ସେଥିରେ ଡାଇନାମୋ ବି ଲଗାଇବ । ପୁରୁଣା ସାଇକେଲ୍‌ଟାକୁ ସେ ବିକିଦେଲା ତାଙ୍କ ଗାଁର ନାରଣ ବେହେରାକୁ ।

ନାରଣ ବେହେରା ନଆଳୀମାଧବ ଆଉ ଦୁଧଛେନା କିଣି ପାହାଲର ରସଗୋଲା ବେପାରୀଙ୍କି ବିକି କରି ବେଶ୍ ରୋଜଗାର କରୁଥିଲା । ସେଇ ପୁରୁଣା ସାଇକେଲ୍‌ଟା ଅବ ନାରଣ ବେହେରା ହାତରେ ବଢ଼ିଆ ଚାଲୁଛି । ଫିଇ ରୋଜ୍ ପଚାଶ ଷାଠିଏ ମାଇଲ୍ ଗଡ଼ୁଛି । ଅଥଚ କି ଦୁର୍ବୁଦ୍ଧି ଘୋଟିଲା ଆବୁବକର୍‌କୁ, ଚକ୍‌ମକିଆ ନୂଆ ସାଇକେଲଟାଏ କିଣିଦେଲା । ଅଢ଼େଇଶ' ଟଙ୍କା ଦେଇ—ପାଣିରେ ପକାଇଦେଲା ଜାଣ । ଡାଇନାମୋଟାଏ ଲଗାଇ ଥିଲା ଯେ ସେଇଟା ପନ୍ଦର ଦିନ ଭିତରେ ଚୋରି ହୋଇଗଲା । ଏଣେ ସାଇକେଲ୍‌କୁ ଦୁଇବର୍ଷ ପୂରିନାହିଁ ତା' ଚଇନୀ (ଚେନ୍) ଘଷି ଖାଇଗଲା । ଫଳରେ କରାଙ୍କ ( କ୍ରାଙ୍କ୍ ) ଦାନ୍ତସବୁ ଘୋରିହୋଇ ତା' ମାଢ଼ି ଦିଶିଲାଣି ! ଏଣେ ବେରେକ୍ (ବ୍ରେକ୍) କେତେବେଳେ ସିଲାକ୍ (ସ୍ଲାକ୍) ହେଉଛି ତ କେତେବେଳେ ଢିଲାକ୍ (ଢିଲା) ହେଉଛି । ହେଣ୍ଡେଲ୍ ବି ହଜାର ଥର ହୁଗୁଳିଯାଉଛି । ଶେଷ କଥା—କି ଟାୟାର୍ ଶାଳା ଗୋସେଇଁଖିଆ କମ୍ପାନୀ ଲଗେଇଥିଲା, ଶାଳା ବର୍ଷେ ବି ଗଲା ନାହିଁ—ତା ଅନୁମାନ ଘୋରି ନ ହେଉଣୁ—କଡ଼ପଟିଆ ଘୋରି ହୋଇଯାଇ ପଞ୍ଜରା ହାଡ଼ ପରି ତା' ଭିତର ସୂତା ସବୁ ଦିଶିଲାଣି । ଫିଇ ମାସରେ ପାର୍ଟ୍‌ସବୁ ବଦଳା ଚାଲିଛି । ତଥାପି ସାଇକେଲ୍‌ର ଏ ହାଲତ । ତଥାପି ହର୍‌ରୋଜ୍ ତିରିଶି ମାଇଲ୍ ଗଡ଼ୁଛି । ହାଣ୍ଡେଲ୍ ଧରିଲାଣି ବାଁ-ତେଢ଼ିଆ । ଗୋଟାଏ ଅସହନୀୟ କେଁ କେଁ ଆବାଜ୍ ସାଇକେଲର କଲିଜା ଫଟାଇ ବାହାରୁଛି । ଏଣେ କାରିଅର୍‌ରେ ବନ୍ଧାଥିବା ଝୁଡ଼ି ଭିତରୁ ମୁରୁଗୀଟାଏ ହଲାଲ୍‌ମୁହଁରେ ପଡ଼ିଥିବା ଭଳି କେଁ କେଁ ଚିଲାଉଛି । ଅଥଚ ସାଇକେଲ୍‌ଟା ଉଠାଣିରେ ଆଉ ଗଡ଼ୁନାହିଁ ।

ଆବୁବକର୍ ମନେ ମନେ ସାଇକେଲ୍‌ଟା ଉପରେ ନିଆଁ ହୋଇ ଯାଉଥାଏ । ଆଜି ଶାଳା ହାରାମୀ ସାଇକେଲ୍‌ଟାକୁ ଶିଣ୍ଟି ଧୀର ମହାନ୍ତି ଦୋକାନରେ ବିକି କରିଦେବ । ଏମିତି ଅବଶ୍ୟ ଅନେକଥର ସାଇକେଲ୍ ଉପରେ ଚିଡ଼ିଛି ଆବୁବକର୍ । ମାତ୍ର ସବୁଥର ହାଟରେ ଅଣ୍ଡା ଆଉ କେଇଟା ମୁରୁଗୀ ଚାଇନା ହୋଟେଲ୍‌ରେ ଦେଇସାରି ଫେରିବା ବାଟରେ ସେ ସହର ଶେଷରେ ବରଗଛ ମୂଳେ ସାଇକେଲ୍ ମରାମତି ଦୋକାନ ଖୋଲିଥିବା ଧୀର ମହାନ୍ତି ପାଖକୁ ଯାଏ । ଧୀର ମହାନ୍ତି ସଙ୍ଗେ ସେ ସେଇ ପିଲାଦିନୁ ଶିଣ୍ଟି ବସିଛି । ଦିହେଁଯାକ ନାଁ ଧରି ଡାକାଡକି ନ ହୋଇ 'ଶିଣ୍ଟି' ବୋଲି ପରସ୍ପରକୁ ସମ୍ବୋଧନ କରନ୍ତି । ଦେଖିଲୁ ଶିଣ୍ଟି ! ଯେତେ ଟଙ୍କା ଦେଉଚ ଦିଅ, ଏ ସାଇକେଲ୍‌ଟାକୁ ନେଇଯାଅ—ତୁମର କୋଉ ଦୁସ୍‌ମନକୁ ବିକିଦେବ । ଆଉ ଏ ନଡ଼-ବେମାରିଆ ମାଇପକୁ ରଖି ଲାଭ ନାହିଁ ।

ଶିଣ୍ଟି ଧୀର ମହାନ୍ତି ତା'ର ପାନଖିଆ ପାଟିରେ ଗୋଟାଏ ସିଗ୍ରେଟ୍ ଜାକି ଗମ୍ଭୀର ହୋଇ ଆସି ଆବୁବକର୍ ହାତରୁ ସାଇକେଲ୍‌ଟା ନିଏ । ତା'ପରେ ସାଇକେଲ୍‌ର ଅଣ୍ଟାଟାକୁ ଟିକେ ସଳଖି ଦିଏ । କୋଉଠି କୋଉଠି ଟିକିଏ ଠୁକେଇ ଦିଏ । କୋଉଠି କୋଉଠି ଟିକିଏ କଣ କଷିଦିଏ । ତା'ପରେ କହେ—ଚାଲ ଅବ ସ୍କୁଲକୁ କେଇଦିନ୍ ଶିଣ୍ଟି ! ଦେଖିବା

କଣ ହେଉଛୁ ! ଭଲ ସିଜନ୍ ଆସୁ—ମୁଁ ସ୍ଥାକୁ ଅଦଳବଦଳ କରି ସବୁ ଠିକ୍ କରିଦେବି । ଅବ ଚଳଉଥା ।

ଏମିତି ଏମିତି କେତୋଟା ସିଜନ୍ ଗଲାଣି । ଆଜି ମଧ୍ୟ ଆବୁବକର୍ ସିଧ ସେଇଠିକି ।

ଧୀର ମହାନ୍ତି ଲୋକଟି ବଜାରଠାରୁ ଅଳ୍ପଦୂରରେ ଏକ ପୁରୁଣା ଝଙ୍କା ବରଗଛ ମୂଳେ ଆଜିକୁ ପାଞ୍ଚବର୍ଷ ଧରି ଗୋଟାଏ ସାଇକେଲ୍ ମରାମତି ଦୋକାନ ଖୋଲି ବେଶ୍ ଦୁଇପଇସା କମାଉଛି । ଲୋକଟା ଆବୁବକର୍ ଗାଁ ଆଡ଼ର । ପିଲାଦିନେ ଗୋଟିଏ ସ୍କୁଲରେ ପାଠପଢ଼ୁଥିଲେ । ଧୀର ମହାନ୍ତି ଗୋଟେ କ୍ଲାସ୍ ଉପରେ ପଢ଼ୁଥିଲା । ଗାଁରେ ସେ ଥିଲା ଧନୀମାନୀ ଘରର ପିଲା; ମାତ୍ର ପାଠ ତା' ଦେହାତି ହେଲା ନାହିଁ । ନବମ ଶ୍ରେଣୀ ପରେ ପଢ଼ା ଛାଡ଼ିଦେଲା । ବାପା ମାଆଙ୍କୁ ନ କହି ନ ବୋଲି ଦିନେ ଘରୁ ବାହାରି ଆଇଲା କାପିଟାଲ । ଛ' ମାସ ଖଣ୍ଡେ ଗୋଟେ ସାଇକେଲ୍ ଦୋକାନରେ କାମ ଶିଖି ଶିଖି ଶେଷରେ ନିଜେ ବନିଗଲା ଓସ୍ତାଦ ।

କେଇଟା ପୁରୁଣା ସାଇକେଲ୍, ଧଡ଼ଡ଼ା ଟାୟାର, ଟିଉବ୍, ଚେଇନ ଇତ୍ୟାଦି ବରଗଛର ଡାଳଯାକ ଝୁଲୁଛି । ମଝିରେ ଗୋଟିଏ କାଠ ଆଉ ଟିଣଛପର କାବିନ୍ । ତା'ଭିତରେ ବିଭିନ୍ନ ରେଂଚ, ପେଚକଶ୍, ପ୍ୟାଚ ଅଠାର ଟିଣଡବାମାନ, ଭେସ୍‌ଲିନ୍ ଡବା, ହାତୁଡ଼ି, ଚକା ଟାୟାର୍ ଭଙ୍ଗିବା ଲାଗି ଯନ୍ତ୍ରଟିଏ—ଗୋଟାଏ ଲମ୍ବା ରବର ନଳୀ ଲାଗିଥିବା ପମ୍ପ, ସବୁବେଳେ ପବନଶୂନ୍ୟ ଚକାମାନଙ୍କ ଉଦରକୁ ପବନ ଠେଁସିବାରେ ବ୍ୟସ୍ତ । କାବିନ୍ ଭିତରେ ଗୋଟିଏ ଛୋଟ ଖଟୁଲି କାନ୍ଥରେ ଟଙ୍ଗା ହୋଇଛି । ତା'ଉପରେ ଛଣ୍ଡାମିଣ୍ଡା ଛୁଟକନା ଆବୃତ ହୋଇ ଗଣେଶଙ୍କର ଛୋଟ ମୂର୍ତ୍ତିଟିଏ । ଆଉ ତା' ଦୁଇ କଡ଼ରେ ଦଶଭୁଜା ମହିଷାସୁରମର୍ଦ୍ଦିନୀ ଦୁର୍ଗାଙ୍କର ଛବି ସାଙ୍ଗକୁ ଜଗନ୍ନାଥଙ୍କର ଟିଣବନ୍ଧା ଚିତ୍ରପଟଟିଏ ଝୁଲୁଛି । ସେ ସବୁକୁ ଘେରି ପୁଣି ଲଙ୍ଗୁଳୀ ଚିତ୍ରତାରକାମାନଙ୍କର କ୍ୟାଲେଣ୍ଡରମାନ କାନ୍ଥଯାକ ଛାଇହୋଇଛି । ହେମାମାଳିନୀ, ବବିତା, ଶର୍ମିଳା, ଡିଂପଲ୍ କପାଡ଼ିଆ, ରେଖା, ନିତୁସିଂମାନଙ୍କର ପ୍ରାୟ ଉଲଗ୍ନ ଛବିରେ କାବିନ୍‌ଟି ତାର ସମସ୍ତ ମଳିନତାକୁ ଘୋଡ଼ାଇ କେତେକାଂଶରେ ସହନୀୟ ଓ ସୁଦର୍ଶନୀୟ କରିପାରିଛି ।

ଧୀର ମହାନ୍ତିର ଦୋକାନଟି କ୍ରମେ ଖୁବ୍ ବଡ଼ ହୋଇଆସିଲାଣି । ଚାରିପାଞ୍ଚଟା ଟୋକା ଅନବରତ କାମରେ ଲାଗିଛନ୍ତି । ଅଧିକାଂଶ ଗରାଖ ମଫସଲିଆ । ପରିବା, ମାଛ, ଦୁଧ, ଛେନା, ଘିଅ ବେପାରୀଦଳ—ଆଉ କିଛି କିଛି କଚେରିଆ ମଧ୍ୟ । ଧୀର ମହାନ୍ତି ନିଜେ ଜଣେ ଓସ୍ତାଦ ମିସ୍ତ୍ରୀ; କିନ୍ତୁ ରାଲେ, ବି. ଏସ୍. ଏ. ରବିନ୍‌ହୁଡ଼, ହମ୍ବର ଆଦି ଗାଡ଼ି ନ ହେଲେ ସେ ନିଜେ ହାତ ଲଗାଏନାହିଁ । ଅରେ ଛୁଃ ! ଏଇ ଦେଶୀ ଗାଡ଼ିଗୁଡ଼ାକ ଗାଡ଼ି ? ସେ ଲୁହାରୁ ଆଗ ମାଟି ଛାଡ଼ୁଛି ? ଓସ୍ତାଦ୍ କେଲା ନାଗ, ଚମ୍ପ, ଅହିରାଜ ଖେଳେଇବ ନା ଧେଣ୍ଡିଆ, ମାଟିବିରାଡ଼ିଙ୍କୁ ଖେଳେଇବ ? ଅନ୍ୟ ଟୋକାମାନେ ଦେଶୀ ଗାଡ଼ି ସଜାଡ଼ନ୍ତି ।

ଧୀର ମହାନ୍ତି ଚଉକି ଉପରେ ବସି ପଇସା ଅସୁଲ କରେ । ନଚେତ୍ ଗୋଟାଏ ସିନେମା ପତ୍ରିକା ବା ଲଲ୍‌ସିଂହ ବହି 'ଛଳନାମୟୀ ମୀରା' ବା 'ଏକ କାମାନ୍ଧିନୀ ନର୍ସର ଇତିକଥା' ଭଳି ବହି ପଢ଼ୁଥାଏ । ସେ କାହା ସଙ୍ଗେ ବେଶୀ କଥାବାର୍ତ୍ତା କରେନାହିଁ ।

ତେବେ ଆବୁବକର୍‌ର ଏଇ ଦେଶୀ ସାଇକେଲ୍‌ଟାକୁ ଧୀର ମହାନ୍ତି ନଜରେ ଦେଖେ, ସକାଳେ । ତା'ଉପରେ ଧୀର ମହାନ୍ତିର ଗୋଟାଏ ସ୍ପେଶାଲ୍ ମୋହବତ ଅଛି ଭିନ୍ନ କାରଣରୁ । ପିଲାଦିନେ ଖରେଶ୍ୱର ହାଇସ୍କୁଲରେ ପଢ଼ୁଥିଲାବେଳେ ଦିନେ ଗଣେଶ ପୂଜା ବ୍ୟାପାରରେ ଗୋଟେ କାରଣରୁ ଦୁଇଦଳ ପିଲାଙ୍କ ଭିତରେ ବାଡ଼ିଆପିଟା ହେଲା । ବିପକ୍ଷ ଦଳ ଧୀର ମହାନ୍ତିକି ଗୋଟେ ଗଛରେ ବାନ୍ଧିଦେବେ ବୋଲି ତାକୁ ଶୂନ୍ୟେ ଶୂନ୍ୟେ ଟେକି ନେଇଯାଇଥିଲେ । ଧୀରୁ ଖୁବ୍ ମଜବୁତ୍ ନ ଥିଲା, ମାତ୍ର ଥିଲା ଖୁବ୍ କୌଶଳୀ; କିନ୍ତୁ ସେଥର ସେ କିଛି କୌଶଳ ଦେଖାଇବା ପୂର୍ବରୁ ଅଗଣି କାନଗୋଇ, ନଟିଆ ସେଣ୍, ଧାନା ସେଠି ଆଉ ଗୋବର୍ ସିଂହ ତାକୁ ବଳପୂର୍ବକ ଶୂନ୍ୟେ ଶୂନ୍ୟେ ଟେକିନେଇଯାଇଥିଲେ ଗାଁ ପାଖ ନଈକୂଳର ଗୋଟେ ବଣକୁ । ସେମାନଙ୍କ ପଛେପଛେ ଗୋଟାଏ ମୋଟା ଲଙ୍ଗଳ-ଦଉଡ଼ି ଧରି ଯିବାଲାଗି ଆବୁବକର୍‌କୁ ଦଳର ହୁକୁମ୍ ଥାଏ । ସେ ସ୍କୁଲରେ ମୁସଲମାନ୍ ପିଲା ମୋଟେ ପାଞ୍ଚ ଛଅ ଜଣ ଥିଲେ । ସେମାନେ ଏ ପୂଜାଫୁଜାରେ ମିଶୁନଥିଲେ; ମାତ୍ର ଆବୁବକର୍ ସବୁ ହିନ୍ଦୁପର୍ବରେ ମିଶେ; ପ୍ରସାଦ ଖାଏ । ମାତ୍ର ତାକୁ ପ୍ରସାଦ ଦେଲାବେଳେ ସମସ୍ତେ ସତର୍କ ଥାଆନ୍ତି ଯେମିତି ତୁଳସୀ କି ବେଲପତ୍ର ବା ଫୁଲଟାଏ ସେ ପ୍ରସାଦରେ ନ ମିଶିଥାଏ । ପ୍ରସାଦରୁ ସେତକ କାଢ଼ି ଦେବାକୁ ହୁଏ । ତା' ନ ହେଲେ ଆବୁବକର୍‌ର ଧର୍ମହାନି ହେବାର ଆଶଙ୍କା ଥାଏତ ! ଆବୁବକର୍ ଚାନ୍ଦା ଦିଏ ଗଣେଶ ଆଉ ସରସ୍ୱତୀ ପୂଜାକୁ । ପୂଜାର ସବୁ ଆୟୋଜନରେ ସେ ଭାଗ ନିଏ । ମାତ୍ର ସେ ବର୍ଷ ଏଇ ଗଣେଶ ପୂଜାରେ ଧୀରୁ ମହାନ୍ତି ସଙ୍ଗେ ଆର ଦଳର ଯେଉଁ ଝଗଡ଼ା ହେଲା, ସେଥିରେ ଆବୁବକର୍ ସଂଖ୍ୟାଲଘୁ ଗୋଷ୍ଠୀର ହୋଇଥିବା ହେତୁ ଆକ୍ରମଣକାରୀ ଦଳଙ୍କ ସଙ୍ଗେ ମିଶିବାକୁ ବାଧ୍ୟ ଥିଲା । ଆବୁବକର୍ ଲଙ୍ଗଳା-ଦଉଡ଼ି ଧରି ଦଉଡ଼ୁଥାଏ । ଧୀର ମହାନ୍ତି ଚାରିଜଣଙ୍କ କବଳ ଭିତରେ ରହି ଖୁବ୍ ଛଟିପିଟି ହେଲା । ତା'ପରେ ଅଚେଷ୍ଟ ହୋଇ ନିଜକୁ ସମର୍ପଣ କରିଦେଲା । ତାକୁ ମଧ୍ୟ ସାହାଯ୍ୟ କରିବାକୁ କେହି ସାହସ କଲେନାହିଁ । କାରଣ ସମସ୍ତଙ୍କୁ ଜଣାଥିଲା ଯେ—ଧନା ସେଠି ଆଉ ଗୋବରା ସିଂଙ୍କ ପାଖରେ ଛିଆଛୁରୀ ଅଛି । ସେମାନଙ୍କର ଦୟାମାୟା ନଥିଲା । ଭୂଷିଦେବେ ଯୋଉଠି ଇଚ୍ଛା—ପେଟରେ ହେଉ ବା ଛାତିରେ ହେଉ······ଯାହାହେଉ ସେଦିନ ସେମାନେ ଧୀର ମହାନ୍ତିକି ଉତ୍ତମ ମଧ୍ୟମ ଦେଇ ଗୋଟାଏ ଶୋଇପଡ଼ିଥିବା ଗଛଡାଳରେ ଚଢ଼ିକରି ଶୁଆଇ ଗଛ କଲମୀ କଲା ଢଙ୍ଗରେ ତାକୁ ଲଙ୍ଗଳା-ଦଉଡ଼ିରେ କଷି କରି ବାନ୍ଧିଦେଇ ଚାଲିଆସିଲେ । · · · ପନ୍ଦର ମିନିଟ୍ ପରେ କିନ୍ତୁ ଆବୁବକର୍ ସେଠାକୁ ପୁଣି ଲୁଚି ଲୁଚି ଫେରିଯାଇ ତାକୁ ବନ୍ଧନମୁକ୍ତ କରିଥିଲା । ସେଇଦିନ ସେ ଦୁହେଁ ଯାଇ ମସଜିଦ୍‌ରେ ପୀରଙ୍କ ପାଖରେ ଶିରିଣି ଭୋଗକରି ଶିର୍ଣ୍ଣି ବସିଥିଲେ । ସେ

ଉପକାର ଆଜିଯାଏ ଭୁଲିନାହିଁ ଧୀର ମହାନ୍ତ । ସେ କହେ—ଦେଖ ସିଣ୍ଡି ! ତୁମ ସାଇକେଲ୍‌ଟା ଦେଶୀ ହେଲେ ବି ମୁଁ ତାକୁ ନିଜ ହାତରେ ସଜାଡ଼ିବି ଯେତେଦିନ ମୁଁ ଏଠି ଅଛି । କେବଳ ପାର୍ଟସ୍‌ତକ ତୁମେ କିଣୁଥିବ । ଆଉ ଦେଖ, ହାଟ ଦିନ ପାଳି ତୁମେ ମୋ କାବିନ୍‌ରେ ରାତିରେ ରହିଯିବ । ସକାଳେ ଯିବ । ମୁଁ ତୁମ ଋଣ ଶୁଝିପାରିବିନି ସିଣ୍ଡି !

ଅବୁବକର୍ ତାହାହିଁ କରେ । ହାଟ ଦିନଦିନ ସେ ବେପାର ସାରି ହାଟରୁ କିଛି ସଉଦା କରେ । ତା'ପରେ ସାଇକେଲ୍‌ଟି ଧରି ଧୀର ମହାନ୍ତ କାବିନ୍‌ରେ ରାତିଟା କଟାଇଦିଏ । ଦୋକାନ କାବିନ୍ ପାଖରେ ଧୀର ମହାନ୍ତ ଆଉ ଗୋଟାଏ ବଡ଼ କାବିନ୍ କରିଛି ବସା-ଉଠା ଶୁଆଶୋଇ କରିବାଲାଗି । ଖରାଦିନେ ଶୀତଦିନେ ସମସ୍ତେ ବାହାରେ ଶୁଅନ୍ତି । ବରଗଛ ମୂଳ ଖରାଦିନେ ଥଣ୍ଡା—ଶୀତଦିନେ ଉଷୁମ । ଖରାଦିନେ କି ଶୀତଦିନେ ରାତିଟା ସେଠି ଖୁବ ସରଗରମ୍ ବି ହୁଏ । ଧୀର ମହାନ୍ତର କାବିନ୍‌କୁ ଘେରି ପାନବିଡ଼ି ଆଉ କେଇଟା କାବିନ୍ ଆଉ ଜୋତା ଦୋକାନ ମଧ୍ୟ ବସିଯାଏ । ଚେଲେଙ୍ଗା ମୋଚି ରାଓ ବୁଢ଼ା ଯୋତା, ଚଟି ଆଉ ଟାୟାର୍ ସିଲେଇକରି ସେଇଠି ରହିଯାଏ । ଅଗାଧୁ ଦାସ ସେଠି ଗୋଟାଏ ପାନଦୋକାନ ଖୋଲିଛି । ତା' ପାଖକୁ ଲଗି ଗୋଟେ ବହି ଦୋକାନ । ପ୍ରୋପ୍ରାଇଟର୍ ଶ୍ରୀ ଦୀନବନ୍ଧୁ ଖଟୁଆ । ସେଠି କୋକଶାସ୍ତ୍ରଠାରୁ ଆରମ୍ଭ କରି ଗଳ୍ପ, ଉପନ୍ୟାସ, ପୁରାଣ ଚଟିବହିମାନ ଓ ପତ୍ରପତ୍ରିକା ବି ମିଳେ । ଗୁପ୍ତରେ ସ୍ମେକାର ବହି ଆଉ ଗ୍ରେକାର ଛବି ମଧ୍ୟ କିଣିବାକୁ ମିଳେ । କାରଣ ଖୁବ୍ ଅଳ୍ପ ଦୂରରେ ଗୋଟାଏ କଲେଜ ଆଉ ହାଇସ୍କୁଲ ମଧ୍ୟ ଅଛି । ଏଇ ମାସେ ଖଣ୍ଡେ ହେବ କୁଆଡ଼ୁ ଗୋଟେ ବ୍ୟାଣ୍ଡପାର୍ଟି ମଧ୍ୟ ଆସି ସେଠି ଗୋଟେ ଅଫିସ ଖୋଲିଛି । ସେଠି ଦିନରାତି ଡ୍ରମ୍ କି ବିଗୁଲ୍ କିଛି ଗୋଟେ ବାଜୁଥାଏ । ସବୁଠାରୁ ଭିଡ଼ ହୁଏ—ପଞ୍ଚକଡ଼ିକୁ କୁନ୍ତଳନାଙ୍କ "ପ୍ରସିଦ୍ଧ ବିଶୁଦ୍ଧ ହିନ୍ଦୁ ହୋଟେଲ"ରେ । ସେଠି ସକାଳେ ସଞ୍ଜେ ବରା, ଗୁଲୁଗୁଲା, ପକୋଡ଼ି ଆଉ ଚାହା । ଆଉ ଦିନ ଗୋଟାକବେଳେ—ପୁଣି ରାତି ଦଶଟାରେ ଭାତ, ଡାଲି, ତରକାରି, ମାଛବେସର । ସେଠି ଆଉ ସାଇକେଲ ଦୋକାନରେ ସବୁବେଳେ ଗହଳି । ତେବେ ଦିନେ ଦିନେ ଖରାଦିନ ବା ଶୀତଦିନର ରାତିରେ ପୂର୍ଣ୍ଣିମା ତିଥିରେ ବରଗଛ ମୂଳେ ଜଗନ୍ନାଥ ମେଳା ହୁଏ । ଯବପବାଣୀକ ସଙ୍ଗୀତ ବା ଦାସକାଠିଆ ରାତିଯାକ ଚାଲେ । ରାତିରେ ବାଟୋଇ ଅତିଥିମାନଙ୍କ ଗୃହାରେ ସେ ସବୁ ମଉଜ-ମଜଲିସରେ ସରଗରମ ହୋଇଉଠେ ବରଗଛ ତଳ ।

ମଉଜମଜଲିସ୍ ବା ଭଜନ-କୀର୍ତ୍ତନରେ ରାତି ଦିନ ବାଜିଯାଏ ଦିନେ ଦିନେ । ସେଇଠୁ ଘଣ୍ଟେ ଖଣ୍ଡେ ବିଶ୍ରାମ ନେଇ ବେପାରି ବାଟୋଇମାନେ ରାତିପାହାନ୍ତା ଆଗରୁ ଉଠି ପୁଣି ଯେଝାର ସାଇକେଲ୍ ବା ଶଗଡ଼ ଧରି ଯେଝା ଗ୍ରାମକୁ ଫେରନ୍ତି । ସେତେ ଲୋକ ସେଠି ଏକାଠି ହୁଅନ୍ତି, ସମସ୍ତଙ୍କ ଭିତରେ ଗୋଟାଏ ଚିହ୍ନାପରିଚୟ ମଧ୍ୟ ହୋଇଯାଇଛି । କିଛି

କିଛି ବନ୍ଧୁତ୍ୱ ବି । ଗୋଟାଏ ଗୋଟାଏ ଧରଣର ମିଳନ ସେମାନଙ୍କ ଭିତରେ ଗୋଟାଏ ପ୍ରକାର ଗୋଷ୍ଠୀଗତ ମମତାର ସୂତ୍ର ଟାଣିଦେଇଛି । ସେ ସମ୍ପର୍କ କୋମଳ ଆଉ ନିଷ୍କାମ ।

"ପ୍ରସିଦ୍ଧ ବିଶୁଦ୍ଧ ହିନ୍ଦୁ ହୋଟେଲ"ର ମାଲିକ କୁଞ୍ଜନନା ସବୁଠାରୁ ବୟସ୍କ ଲୋକ । ଜଗନ୍ନାଥ ମେଳାର ପୁରୋହିତ ସିଏ, ପାଠକ ସିଏ, ପୂଜାରୀ ବି ସିଏ । ଖୁବ୍ ଚମତ୍କାର ଭଜନ ଚଉପଦୀ ମଧ୍ୟ ଗାଇଆସେ । ଅଫିମ ଟିକିଏ ଖା'ନ୍ତି ଅଣ୍ଟାଧରି ବାତ ଯୋଗୁଁ । ଗଞ୍ଜେଇ ଟାଣନ୍ତି କେବଳ ଏମିତି ମେଳା-ମଉଚ୍ଛବରେ । କୁଞ୍ଜନନାଙ୍କୁ ଖାତିର କରନ୍ତି ସମସ୍ତେ । କେହି ବାକି-ସାକି ଟଙ୍କେ-ମଷେ ଖାଇଲେ ନ ଶୁଝିବା ଲାଗି ଡର ସହେନାହିଁ ।

କୁଞ୍ଜନନା ପିଲାଦିନେ କଲିକତାରେ ଥିଲେ । ସେଇଠୁ ହିନ୍ଦୁ ମୁସଲମାନ ଦଙ୍ଗା ବେଳେ ଦେଶକୁ ଫେରିଆସି ଏହି ସହରର ଏକ କଲେଜ ହଷ୍ଟେଲ୍ ମେସ୍‌ରେ ରହିଲେ ପାଚକ ହୋଇ । ଦୀର୍ଘ ପନ୍ଦର ବର୍ଷରୁ ଊର୍ଦ୍ଧ୍ୱ କଟିଛି ତାଙ୍କର ସେଇ ହଷ୍ଟେଲ୍ ମେସ୍‌ରେ । କୁଞ୍ଜନନା କହନ୍ତି ଆଗେ ଆଗେ ପିଲମାନେ ତାଙ୍କୁ ଖୁବ୍ ଖାତିର ସମ୍ମାନ କରୁଥିଲେ । ସେ ପିଲମାନେ ଥିଲେ ଅଲଗା । ସେ ସମୟ ବି ଥିଲା ଅଲଗା । ତାଙ୍କ ହାତରୁ ରନ୍ଧା ଖାଇଥିବା ପିଲା ଆଜି ବଡ଼ ହାକିମ ମନ୍ତ୍ରୀ ହେଲେଣି । କିନ୍ତୁ କ୍ରମେ ଏଣିକି ଏଣିକି ସେ ଖାତିର ଚାଲିଗଲା । ଯୁଗ ବି ଗଲା ଓଲଟି । ଏଣିକି ଏ ଟୋକାମାନେ ଭାରି ଅମରମତ୍ତ ହେଲେ; ଚନ୍ଦ୍ର ସୂର୍ଯ୍ୟ ମାନିଲେନି । ଜୁଆଡ଼େଲ୍‌ଙ୍କ ପୁଅମାନେ ଦିନେ ସାମାନ୍ୟ କାରଣରୁ ମେଳହୋଇ କୁଞ୍ଜନନା ଦେହରେ ହାତ ଲଗାଇଦେଲେ । ଗୋଟାଏ ଟୋକା ତାଙ୍କୁ ଲଙ୍ଗଳା ମଧ୍ୟ କରିଦେଲା । କୁଞ୍ଜ ନନା ବ୍ରାହ୍ମଣ ମଣିଷ । ତାଙ୍କ ବାପା ଚଣ୍ଡୀ ସାଧିଥିଲେ । ସେ ଉଦ୍‌ଭ୍ରାନ୍ତ ଲଙ୍ଗଳା ହୋଇ ଠିଆହୋଇଥାନ୍ତି । ଲମ୍ବିକା ହୋଇ ଖଙ୍କରି ପେଟା ଡେଙ୍ଗା ମଣିଷ କୁଞ୍ଜନନା । ଗୋରା ଦେହଟା ଚୂଳନାଆଁର ଉତ୍ତାପ ଓ ଝାଳରେ ଘିଟି ଘିଟି ତମ୍ବାପରି ଦିଶୁଥାଏ । ତାଙ୍କର ଦେହ କ୍ରୋଧ, ଲଜ୍ଜା, ଅପମାନ ଓ କ୍ରୋଧରେ ଥରୁଥାଏ । ଦପ୍‌ଦପ୍ ନିଆଁ—ଆଖିରୁ ଝରିଇ ଉପରକୁ ହାତଟେକି ଅଭିଶାପ ଦେଲେ କୁଞ୍ଜନନା—ଦେଖିରେ ଘୋଡ଼ାମୁହାଁ ପାଷଣ୍ଡେ ! ମ୍ଲେଚ୍ଛମାନେ ! ମୋ ଭଳି ନିର୍ଦ୍ଦୋଷ ଦବିଜ ବ୍ରାହ୍ମଣ ଦେହରେ ହାତଦେଲ—ତୁମ ବାପ ବୟସରୁ ଅଧିକା ମତେ ଉଲଗ୍ନ କଲ—ଆଜିଠାରୁ ମାସକ ଭିତରେ ତୁମ ହଷ୍ଟେଲରେ ପୁଲିସ୍ ପଶିବ । ତୁମକୁ ବାଡ଼େଇ ବାଡ଼େଇ ଆଣ୍ଠୁ ଗଣ୍ଠି ଭାଙ୍ଗିବ । ଆଉ ଯୋଉ ବେଧ ଛୁଆଏ ମତେ ଉଲଗ୍ନ କଲେ—ସେମାନଙ୍କ ଇନ୍ଦ୍ରି ଉପରେ ବ୍ରହ୍ମମାଡ଼ ବସିବ । କଦାପ୍ନନ ଏ ବଚନ ମିଥ୍ୟା ହେବ ନାହିଁ ।

ସତକୁ ସତ ସେଇଆ ହୋଇଗଲା । ସାମାନ୍ୟ କଥାରେ ମାସେ ଦେଢ଼ମାସ ଭିତରେ ସେ ହଷ୍ଟେଲ୍‌ରେ ପୋଲିସ୍ ପଶି ବହୁ ଟୋକାଙ୍କୁ ବାଡ଼େଇ ଗୋଡ଼ହାତ ଭାଙ୍ଗିଦେଲେ । ଜଣେ ଦି' ଜଣ ମାଷ୍ଟ୍ରଙ୍କର ବି ମୁଣ୍ଡ ଫାଟିଗଲା । ଟୋକାମାନଙ୍କୁ ହାତ ଗୋଡ଼ ବାନ୍ଧି ହାଜତରେ ପୂରାଇଦେଲେ । ଜଣେ ଟୋକାର ଅଣ୍ଡକୋଷ ଉପରେ ମାଡ଼ ହୋଇ ସେ ତିନିମାସ ହାସ୍‌ପାତାଲରେ ପଡ଼ିଥିଲା । କୁଞ୍ଜନନା କହନ୍ତି—ସେଇ ଟୋକା କୁଆଡ଼େ ତାଙ୍କ କଚ୍ଛ ଫିଟାଇ ତାଙ୍କୁ ସମସ୍ତଙ୍କ ଆଗରେ ଲଙ୍ଗଳା କରି ଭଣ୍ଡିଆ କରିଥିଲା ।

ଏପରି ମହିମାବନ୍ତ କୃତ୍ତିବାସନାଙ୍କ ବରଗଛ ମୂଳେ ସମସ୍ତେ ଖାତିର କରନ୍ତି । ସମସ୍ତଙ୍କୁ ମଧ୍ୟ ଜଣାଅଛି—କୃତ୍ତିବାସନାର ଏ ସଂସାରରେ ଆଉ କେହି ନାହିଁ । ସ୍ତ୍ରୀ ତ କୋଉକାଳୁ ମରିଛି । ପୁଅଟିଏ ଥିଲା ଅଠର ବରଷର । କଲେଜରେ ପଢ଼ୁଥିଲା । ଭଲ ପଢ଼ୁଥିଲା । ସେ ମଧ୍ୟ ଦିନେ ଦୁର୍ଭାଗ୍ୟକୁ ସାଇକେଲରେ ଯାଉଥିଲାବେଳେ ଟ୍ରକ୍ ଚକାରେ ପଡ଼ି ମରିଗଲା । କୃତ୍ତିବାସନାର ଏକରେ ଖଣ୍ଡେ ଭୂ-ସମ୍ପତ୍ତି ଓ ଦରଚିଅ କେଇ ଗୁଣ୍ଠ ଥିଲା । ସେତକ ସାନଭାଇ ଦୁଇଜଣଙ୍କୁ ସମାନ ଭାବେ ବାଣ୍ଟିଦେଇ ସେ କଲେଜ ହଷ୍ଟେଲ୍‌ରୁ ଆସି ଏ ବରଗଛ ମୂଳେ କାବନ୍ ପକାଇ ହୋଟେଲ କରି ଚଳନ୍ତି । ଧୀର ମହାନ୍ତି ତାଙ୍କର ହୋଟେଲରେ ଜଳଖିଆ ଆଉ ଭାତ ଖାଏ । ଧୀର ମହାନ୍ତି କୃତ୍ତିବାସନାଙ୍କୁ ଧର୍ମବାପ କରିଛି । କାରଣ ଧୀର ମହାନ୍ତି ତା' ବାପର ତ୍ୟାଜ୍ୟପୁତ୍ର ।

ଧୀର ମହାନ୍ତିର ବାପା ବେଶ୍ ଥିଲାବାଲା । ବାଡ଼ିଏ ଖଣ୍ଡେ ଘର । କିଛି ମହାଜନୀ ମଧ୍ୟ ଅଛି । ବାପାଙ୍କର ଇଚ୍ଛା ଥିଲା, ଧୀର ପାଠ ପଢ଼ି ହାକିମ ହେବ । ମାତ୍ର ଧୀରର ପାଠ-ପଢ଼ା ହେଲାନାହିଁ । ସେ ବେଶ୍ ଚାଲାଖ ଚତୁର, ବେଶ୍ କୌଶଳୀ ମଧ୍ୟ ଅନ୍ୟ ଦିଗରେ । ମାତ୍ର ପାଠ ବହି ସଙ୍ଗେ ତାର ଆଦୌ ପଟିଲାନାହିଁ । ଅଙ୍କ କ'ଣ, ସାହିତ୍ୟ କ'ଣ, ଇତିହାସ କ'ଣ, ଇଂରାଜୀ କ'ଣ—ତା' ମୁଣ୍ଡରେ କିଛି ପଶିଲାନାହିଁ । ଅନ୍ୟ ପଢ଼ୁଆ ପିଲାଙ୍କ ଆଗରେ ତାକୁ ଭାରି ଅପମାନ ଲାଗିବାରୁ ସେ ପାଠପଢ଼ା ଛାଡ଼ି ସାଇକେଲ ମିସ୍ତ୍ରି ହେଲା । ବାପା ଆଉ ଧୀରକୁ ପଚାରନ୍ତି ନାହିଁ । ତା'ର ସାନଭାଇ ଦୁଇଜଣ —ଜଣେ ହାକିମ—ଆଉ ଜଣେ କଲେଜରେ ଲେକ୍‌ଚରର୍ । ଦୁଇଟି ଭଉଣୀ ବାହାହୋଇ ଗଲେଣି । ଭିଣୋଇମାନଙ୍କ ଭିତରୁ ଜଣେ ବଡ଼ ହାକିମ—ଆଉ ଜଣେ ଖୁବ୍ ବଡ଼ ବ୍ୟବସାୟୀ । ସେମାନଙ୍କ କାହା ସଙ୍ଗେ ମିଶେନାହିଁ ଧୀର । ସେମାନେ ମଧ୍ୟ ଧୀର ସଙ୍ଗେ ମିଶନ୍ତିନାହିଁ । ତାକୁ ପଚାରନ୍ତି ନାହିଁ । ଏପରିକି ବାପା ମଧ୍ୟ ଏଇ ବାଟେ ସହରକୁ ଯା'ନ୍ତି ଆସନ୍ତି; ମାତ୍ର ଭୁଲିରେ ବି ଏ ବରଗଛ ଆଡ଼କୁ ଚାହାନ୍ତିନାହିଁ । ତାଙ୍କର ଧୀର ଉପରେ ପ୍ରଚଣ୍ଡ ଘୃଣା ଆଉ ଦ୍ୱେଷ ।

କିନ୍ତୁ ଧୀର ମଧ୍ୟ କାହାକୁ ପରୁଆ କରେନାହିଁ । ସାଇକେଲ ମିସ୍ତ୍ରିର ବାପା ହେବାକୁ ଯଦି ମହେଶ୍ୱର ମହାନ୍ତି ଲଜ୍ଜିତ ଓ ଅସମ୍ମତ, ତେବେ ପ୍ରସିଦ୍ଧ ବିଶୁଦ୍ଧ ହିନ୍ଦୁ ହୋଟେଲର ମାଲିକ ଓ ରାନ୍ଧୁଣିଆ କୃତ୍ତି ଶତପଥୀଙ୍କୁ ତାର ବାପା ବୋଲି କହିବାକୁ ଧୀର ମହାନ୍ତି ଲଜ୍ଜିତ ହେବ କାହିଁକି ? କୃତ୍ତିବାସନାଙ୍କୁ ମଧ୍ୟ ସେ ଡାକେ ବାପା ବୋଲି । ଆଉ କୃତ୍ତିବାସନା ଆଖିରେ—ଧୀର ତାଙ୍କର ନିଜର ପୁଅଠାରୁ ବଳି ।

ଆବୁବକର୍ ସବୁକଥା ଜାଣେ । ଏଇ ବରଗଛ ତଳଟି ଗୋଟିଏ ଗ୍ରେଟିଆ ଦୁନିଆ । ଗାଁ ଆଉ ସହରକୁ କାମ ଖୋଜି ଆସିଥିବା ଜଣେ ଦୁ'ଜଣ ମଧ୍ୟ ସବୁଦିନେ ଏଠି ଆତଯାତ ହେଉଥାନ୍ତି । ଅଳ୍ପ ଦୂରରେ କଚେରି । କଚେରିବାଲାଙ୍କର ମଧ୍ୟ ଏଠି ଦ୍ୱିପ୍ରହରରେ ଭିଡ଼ ହୋଇଥାଏ । ଆବୁବକର୍ ଏହି ବଡ଼ ସହରଟାକୁ ବୁଝିପାରେନା—ମାତ୍ର ସହରତଳି ଏହି ବରଗଛ ମୂଳର ଗ୍ରେଟ ଦୁନିଆଟି ଜରିଆରେ ସେ ସହର ଭିତରେ ପ୍ରବେଶ କରେ । ତା'ର

ସିଣ୍ଟି ଧୀର ମହାନ୍ତ ଆଉ ତାର ଏହି ବରଗଛ ମୂଳର ଦୁନଅଟି ତା'ର ଆସ୍ଥା ଆଉ ବିଶ୍ୱାସର କେନ୍ଦ୍ର ।

ଆବୁବକର୍ ସାଇକେଲ୍‌ରୁ ବାଧ ହୋଇ ଓହ୍ଲାଇପଡ଼ିଲା । ଦେହରୁ ଗମ୍‌ଗମ୍ ହୋଇ ଝାଳ ହୋଇପଡ଼ୁଛି ! ଆଗରେ ଖୁବ୍ ଗୋଟାଏ ଉଠାଣି । ଏଣେ ସାଇକେଲ୍‌ର ଚକା ମଧ୍ୟ ଆଉ ଗଡ଼ୁନାହିଁ । କ'ଣ ହୋଇଛି ତା'ର କେଜାଣି ! ଆବୁବକର୍ ଭାବିଲା—ପହିଲେ ସେ ଯିବ ସେଇ ବରଗଛ ମୂଳକୁ ସିଣ୍ଟିକ ଆଗ ଗାଡ଼ିଟା ଦେଖାଇବ; କାରଣ ବରଗଛଠାରୁ ମାର୍କେଟ ତ ଆହୁରି ଉନକିଲୋମିଟରେ ବାଟ ହେବ । କ୍ୟାରିଅର୍‌ରେ ବନ୍ଧାଥିବା ଝୁଡ଼ି ଭିତରୁ ଅକାରଣଟାରେ ଦୁଇଡଜନଟା ମୁରୁଗୀ ଜୀବନମୂର୍ଚ୍ଛା । କେଁ-କେଁ ହୋଇ ଚଲେଇ ଉଠୁଛନ୍ତି । ସତେକି ଝୁଡ଼ି ଭିତରେ କଏ ତାଙ୍କର ବେକ ମୋଡ଼ି ଲାଗିଛି !

ଆବୁବକର୍‌ର ମନ ଚିଡ଼ିଗଲା । ଭାରି ଦୁର୍ବଳ ଲାଗୁଛି । ଦେଢ଼ମାସ ହେବ ସେ ହାଡ଼ଫୁଟିରେ ପଡ଼ିଥିଲା । ଭୟଙ୍କର ହାଡ଼ଫୁଟି । ମାସେ ହେବ ସେ ଘରୁ କୁଆଡ଼େ ବାହାରିନାହିଁ । ପନ୍ଦର ଦିନ ସାଷ୍ଟମ ହେଲା ପରେ ସେ ଆସିଛି ସହରକୁ । ଦେହରେ ପୂରା ଜୋର୍ ଆସିନି ।

ଉଠାଣିଟା ଗଲା । ଆବୁବକର୍ ଫେରି ହେଇ ଅଗ୍ରସର-ବିମୁଖ ସାଇକେଲ୍‌ଟା ଉପରେ ଉଠିଲା । ସେ ଆଗ ସିଣ୍ଟି ଧୀର ମହାନ୍ତ ପାଖକୁ ଯିବ । ସେ ଆଜ ଏ ଗୋସେଇଁଖିଆ ସାଇକେଲ୍‌ଟାକୁ ବିକିଦେବ । କହିବ—ହେଇଟି ସିଣ୍ଟି ! ଆଉ ଏଟାକୁ ରଖିବିନାହିଁ । ଯେତେ ଟଙ୍କାରେ ହେଉ ପଛେ—ନିଅ, ବିକିଦିଅ । ମତେ ଗୋଟାଏ ପୁରୁଣା ର୍ବିନହୁଡ଼୍, ବା ବି. ଏସ୍. ଏ. କିଣେଇଦିଅ । ଚାଲେ ଚଳିବ ନାହିଁ । ଭାରି ସୁକୁମାରିଆ । ଗଡ଼େ ସିନା ଭଲ । ମଫସଲ ରାସ୍ତାକୁ ନୁହେଁ । ସାଇକେଲ୍‌ଟାକୁ ବିକିବାର ସିଦ୍ଧାନ୍ତ ନେଇଗଲା ପରେ ଆବୁବକର୍‌ର ଦେହ ଆଉ ମନରେ ପୁଣି ଟିକିଏ ଜୋର୍ ଆସିଲା । ସେ ଖୁବ୍ ଜୋର୍‌ରେ ପାଡେ଼ଲ୍ ଚାବିଲାଗିଲା । ବରଗଛ ମୂଳ ଆଉ ଅଳ୍ପବାଟ । ହେଇ ଦେଖାଗଲାଣି ତା'ଉପରେ ଉଡ଼ୁଥିବା ତିନୋଟି ପତାକା । ନାଲି, ଧଳା ଆଉ ନେଳୀ ରଙ୍ଗର । କୁନ୍ତଳନାର କୀର୍ତ୍ତି । ବରଗଛ ତଳେ ଗୋଟାଏ ସ୍ଥାୟୀ ଜଗନ୍ନାଥ ମନ୍ଦିର କରିବ ବୋଲି ମଧ୍ୟ ତାର ଇଚ୍ଛା । କୋଉଦିନୁଁ ଚାନ୍ଦା ଅସୁଲ ଆରମ୍ଭ କଲାଣି । ଚାନ୍ଦାଟିକିଏ ତ କୋଉକାଳୁ ହୋଇ ସାରିଛି । ଖାଲି ତା' ଉପରେ ଛୋଟିଆ ମନ୍ଦିରଟାଏ ହେବ । କୁନ୍ତଳନା କହେ—ଆରେ କୀର୍ତ୍ତି ରଖିଯାଅ, ଏ ପୃଥିବୀରେ ଆଉ କୋଉ କୀର୍ତ୍ତି ନୁହେଁ, ଧର୍ମ କୀର୍ତ୍ତି । ଧର୍ମ ଏକା ସିନା ମହତପଣିଆ । ଏଇ ଏକାମ୍ର ଭୂମିରେ ଏକ ଊଣା ଲକ୍ଷେ ମନ୍ଦିର ଆଗରୁ ବିଶ୍ୱକର୍ମା ଗଢ଼ି ରଖିଛି । ଚାରିପଣ ମାତ୍ର ଉପରେ ଅଛି—ଆଉ ବାରପଣ ରହିଛି ମାଟିତଳେ ଗୋପ୍ୟମାନ ହୋଇ । ଏଇ କଳିଯୁଗରେ ଆଉ ବାରପଣ ମନ୍ଦିର ଏ ଭୂଇଁ ଉପରେ ଗଢ଼ାଗଲେ ଯାଇ ବିଶ୍ୱକର୍ମାର ସେଇ ଏକ ଊଣା ସଂଖ୍ୟାଟି ପୂରିବ ! ଆମକୁ ଯାହା ଲକ୍ଷେ, ବିଶ୍ୱକର୍ମାର ସେ ଗୋଟାଏ । ଏମିତି ଗଣନା । ଆବୁବକର୍ ଏସବୁ କଥାକୁ କାନାଏଁ । ମାତ୍ର ଏ ସବୁ ତ ତା' ଧର୍ମର କଥା ନୁହେଁ । ତେବେ କୁନ୍ତଳନାର କଥା ତା' କାନକୁ ମନ୍ଦ ଶୁଣାଯାଏ ନାହିଁ, ଜଗନ୍ନାଥ ପାଣ୍ଠିକି ସେ ମଧ୍ୟ ଚାନ୍ଦାଦିଏ ।

ବରଗଛ ମୂଳେ ପହୁଁଚ ସେ ସାଇକେଲ୍‌ଟାକୁ ଖୁବ୍ ଧୀରେ ଷ୍ଟାଣ୍ଡ ଉପରେ ରଖିଲା ଏବଂ ତାକୁ ଧରି ଠିଆହେଲା । ସିର୍ଣ୍ଣି କାହିଁ ? ଦୋକାନ ପାଖ କାବନ୍‌ଟା ଆଗରେ ଗୋଟାଏ ଚାଟି ପଡ଼ିଯାଇଛି । ସେ ଚାଟି ଉପରେ ଗୋଟାଏ ଶାଢ଼ି ଏବଂ ଜାମାପଟା ଶୁଖୁଥିବାର ଦେଖି ଆବୁବକର୍ ଆଶ୍ଚର୍ଯ୍ୟ ହେଲା । ସେ ଚାଟି ଆରପଟେ ଅଉ କିଛି ଦେଖି-ପାରିଲେ ନାହିଁ । ଏଣେ ସିର୍ଣ୍ଣିର ଦୁଇଗୁଣଟା ମିସ୍ତ୍ରିଟୋକା ଆଗଭଳି କାମରେ ଲାଗିଛନ୍ତି । କିଏ ପମ୍ପ ମାରୁଛି—କିଏ ବା ଗୋଟେ ସାଇକେଲ୍‌କୁ ତଳେ ଚିତ୍‌କରି ଶୁଆଇ ତା' ପେଟରୁ ଅନ୍ତ୍ରବୁଜୁଲା ବାହାର କଲାଭଳି ଟିଉବ୍‌ଟା କାଢ଼ି ଘସର୍ ଘସର୍ କରି ପାଣିରେ ବୁଡ଼ାଉଛି ଆଉ ଏଣିକି ତେଣିକି ଗୁହୁଁଛି, ଯ୍ୟା ତା ସଙ୍ଗେ ବାତ୍‌ଚିତ୍ କରୁଛି । ଲୋକେ ଜମିଛନ୍ତି ପ୍ରଂପର । କୁଷ୍ଣନଗରର କାବନ୍ ଆଡ଼ୁ ଛଣା ପକୋଡ଼ିର ବାସନା ଆସୁଛି । ଆବୁବକର୍ ଡାକ ମାରିଲା ଗୋଟେ ଚଢ୍ଢା ଟୋକାକୁ ।

ଏ ସନା ! ସିର୍ଣ୍ଣି କୁଆଡ଼େ ଗଲାବେ ?

ସନା ଟୋକାଟା ଖେଁ-ଖେଁ ହୋଇ ହସିଲା । ଆବୁବକର୍ କିଛି ସମ୍ଝି ନପାରି ପୁଣି ପଚାରିଲା—ଅବେ ହସୁଛୁ କାହିଁକି ସେମ୍‌ତା ? ତତେ ମୁଁ ବାତ୍ ପଚାରୁଛି—ତୁ ସେମିତି ବେହୁଦା ଭଳିଆ ହସୁଛୁ କାହିଁକି ? ଶାଲ୍ଲା ବେଅକ୍‌କଲ୍ଲା, ବେଆଦବୀ ।

ସନା ଟୋକାଟା ଚୁପ୍ ହୋଇଗଲା । ତା' ମାଲିକର ସିର୍ଣ୍ଣି ବଡ଼ା-ସାଙ୍ଗ, ନା ! ତାକୁ ଖାତିର୍ ମଜାକ୍ କରିବା କଥା । ତେବେ ମାଙ୍ଗା ବୋଲି ଯୋଉ ଟୋକାଟା ଗୋଟେ ସାଇକେଲ୍ ଚକାର ଟାଏର୍ ଖୋଲୁଥିଲା, ସେ କହିଲା—ବାବୁ ସାଦୀ ହୋଇଛନ୍ତି, କଣ ତୁମକୁ ମାଲୁମ୍ ନାହିଁ ? ତମେ ଆଜଯାଏ କୋଉଠି ଥିଲ ମିଆଁ ବାବୁ ?

ଆଶ୍ଚର୍ଯ୍ୟ ହୋଇଗଲା ଆବୁବକର୍ । ଏ କଥା ଶୁଣି ତା' ମନଟା ଟିକିଏ ଆପଣାଆଡ଼୍ ଦବିଗଲା ସତେ ? ସିର୍ଣ୍ଣି ସାଦୀ ହୋଇଗଲା ଏହା ଭିତରେ ? ମାତ୍ର ଆଜଯାଏ ସେ ନିଜେ ବି ସାଦୀ ହୋଇପାରିଲା ନାହିଁ । ରୁପେୟା ଦରକାର ରୁପେୟା । ତା'ର ମନେପଡ଼ିଲା ତାର୍ ଖୋଦ୍ ଚାଚା ଅସଗର ଖାଁର ସାନଝିଅ ସାବିଲା କଥା । ସାବିଲା ତା' ଗୋଡ଼ ଟେକି ବସିଛି, ଆସିବ ବୋଲି । ମାତ୍ର ରୁପେୟା ? ରୁପେୟା କାହିଁ ? ବବର ଯୌତୁକ ଯୋଗାଡ଼ କରିବା କି ସହଜ ଝାମେଲା ? ଆବୁବକର୍ ମଳିନ ମୁଖରେ ମାଙ୍ଗା ଟୋକା ଉଦ୍ଦେଶ୍ୟରେ କହିଲା—ଦେଖିଲୁ ମାଙ୍ଗା ! ସାଇକେଲ୍‌ଟା କାହିଁକି ଗଡ଼ୁନାହିଁ ?

ମାଙ୍ଗା ଆସି ଆଗ ସାଇକେଲ୍‌ଟାର ପାଡେଲ୍ ଘୁରଘୁର୍ କଲା । ତା'ପରେ ଆଗଚକାଟାକୁ ଘୂରାଇଲା । ସେଇଠୁ ଘୂରାଇଲା ପଛଚକାଟାକୁ ।

--ସେ କିଛି ନୁହଁ ମିଆଁ ଜାନ୍ । ପଛ ବେରେକ୍ ଦ'ଟା ରିମ୍ ସଙ୍ଗରେ ଲାଗି ଟିକିଏ ଜାମ୍ ଧରୁଛି । ବେରେକ୍ କିଲପ୍ ଦ'ଟା ବଦଳାଇବ । ମୁଁ ଅବ ଟିକିଏ ଲୁଜ୍ କରିଦେଉଛି । ତମେ ମାର୍କେଟରୁ କାମସାରି ଫେରିଆସ । ଠିକ୍ କରିଦେବ ।

ଆବୁବକର୍ ପଚାରିଲା—ପାର୍ଟସ ସବୁ କଣ ଲାଗିବ କହ ? ମାଙ୍ଗା କହିଲା—ଯାହା ଲାଗିବ ଆମ ପାଖେ ଅଛି । ବାବୁ ଇଠି ଗୋଟେ ପାର୍ଟସ ଦୋକାନ ଖୋଲିଲାଣି ଯେ ।

—ଠିକ୍ ଅଛି ।

ମାଙ୍ଗା ସାଇକେଲ ଚକ ଦୁ'ଟାର ପମ୍ପ ଦେଖିଲା । —ଚକା ଅ.ଜୁର ପବନ ଖାଇବ ମିଆଁଜାନ୍ ! ନ ହେଲେ ଗଡ଼ିବ କପରି ?

—ଦେ ଦେ, ପବନ ଦେ । ମାଙ୍ଗା ଦୁଇଚକରେ ପବନ ଠେସିଦେଲା । ଝାଡ଼ିଝୁଡ଼ି ହୋଇ ଉଠିଲା ଭଲ ସାଇକେଲ୍‌ଟା ଉଠିଲା । ଅ.ବୁବକର୍ ପଚାରିଲା—ସିର୍ଣ୍ଣି କ'ଣ ଏତେ-ବେଳ ଯାଏ ଶୋଇଛି ? ମାଙ୍ଗା କହିଲା—ହଁ । ତା'ପରେ ସବୁଟୋକାଯାକ ହସି ଉଠିଲେ । ଆବୁବକର୍ ଆହୁରି ବିଷଣ୍ଣ ହୋଇପଡ଼ିଲା । ତାକୁ ଭାରି ଉଦାସ ଲାଗିଲା ।

ମାଙ୍ଗ ସାଇକେଲ ଉପରେ ଉଠିଲାଣି ଚକା ଦୁ'ଟା ଚମତ୍କାର ଗଡ଼ିଲା । ମାର୍କେଟ ଆଉ ଅଳ୍ପବାଟ ଅଛି । ଆଗପଟୁ ମଧ୍ୟ ପବନ ଆଉ ବହୁନାହିଁ । ଏଣିକି ପଛରୁ ଠେଲୁଛି । ମୁରୁଗୀଗୁଡ଼ାକ କଳୁ ମଝିରେ ମଝିରେ ଚାଲିଉଥାନ୍ତି । ଆବୁବକର୍ ଉଦାସ ମନରେ ମାର୍କେଟ ଆଡ଼େ ଛୁଟିଲା । ବାଟଯାକ ଉଡ଼ି ଚାଲିଲା ଆବୁବକର୍—ସିର୍ଣ୍ଣି ସାଦୀ ହେଲା ? ତାକୁ ଟିକିଏ ଖବର ବି ଦେଲାନାହିଁ ? କପରି ସାଦୀ ହେଲା ସିର୍ଣ୍ଣି ? ବିବିଟାଏ କୋଉଠୁ ପାଇଲା ? ବିବି କ'ଣ ଆସ୍‌ମାନ୍‌ରୁ ଉଡ଼ିଆସିଲା ତା' ପାଖକୁ ? କିଏ ପୁଣି ଯୋଗାଡ଼ କରିଥିବ ତ ? ନିଶ୍ଚୟ ଏକଥା ମାସେ ଦୁ'ମାସର କଥା ନୁହେଁ । ବହୁ ଆଗରୁ ଯୋଗାଡ଼ ଚାଲିଥିବ । ସିର୍ଣ୍ଣି ଭାରି ଜଣେ । କାହାକୁ ସେ ଗୁମର ଜଣାଇନାହିଁ ଆଗରୁ । ମାର୍କେଟ ପାଖହୋଇଯାଇଥିଲା । ଆବୁବକର୍ ପହଞ୍ଚିଲେ ଚାଇନା ହୋଟେଲ ଆଡ଼େ ଗଲା ।···ମାର୍କେଟ କାମସାରି ଫେରିଲା ଅ.ବୁବକର୍ ବାଟ ପ୍ରାୟ ନଅଟା ବେଳକୁ । ବରଗଛ ମୂଳେ ଆସି ସାଇକେଲ୍‌ରୁ ଓହ୍ଲାଇ-ପଡ଼ିଲା ଆବୁବକର୍ । ଏ କ'ଣ ? କ'ଣ ଏ ଘଟଣା ? କିଏ ସେ ଏମାନେ ? ଏତେ ପୋଲିସ୍ କାହିଁକି ଏଠି ? କିଏ ଏଠି କ'ଣ କରିଛି ? ଖୁନ୍ ? ରାହାଜାନି ? ଡକାଏତି ?

କ'ଣ ହୋଇଛି ? କିଏ କରିଛି ? ସିର୍ଣ୍ଣି କାହିଁ ? କୁନ୍ତନନା କାହାନ୍ତି ? ରାମାରାଓ ମୋଟ କୁଆଡ଼େ ଗଲା ? ପାଟିରୁଣ୍ଡ ହଇଚଇ ଭିତରେ ଆବୁବକର୍ କିଛି ବୁଝିପାରିଲା ନାହିଁ । ଏଠି ବିଜୁଳିବତି ନାହିଁ । ଗୋଟାଏ ପେଟ୍ରୋମାକ୍ସ ଆଲୁଅରେ ସବୁକିଛି ଦେଖା-ଯାଉନାହିଁ ଭଲକରି । ଏଣେ ଲୋକଗହଳି ମଧ୍ୟ ବଢ଼ି ଚାଲିଛି ।

ଆବୁବକର୍ ବହୁ କଷ୍ଟରେ ଦେଖିପାରିଲା ତା'ର ସିର୍ଣ୍ଣି ଧୀର ମହାନ୍ତିକୁ ପୋଲିସ୍ ଅଣ୍ଟାରେ ଦଉଡ଼ି ଦେଇ ବାନ୍ଧିଛନ୍ତି । ଅ.ଉ ତା'ପାଖେ ମଧ୍ୟ ଅ.ଉ ଚାରିଜଣ ଅପରିଚିତ ଯୁବକ ବନ୍ଦୀ ହୋଇଛନ୍ତି । କଥା କ'ଣ ? ଅ.ବୁବକର୍ ମୁଣ୍ଡ ଚୋଳମାଳ ଧରିଗଲା । ତାକୁ ଗୋଟାଏ ଆତଙ୍କ ମାଡ଼ିବସିଲା । ସେ ସେଠାରେ ରହିବ କି ପଳାଇଯିବ କିଛି ଠିକ୍ କରି ପାରିଲା ନାହିଁ । ନାଃ ! ସେଠୁ ସେ ପଳାଇଯିବାଟା ଠିକ୍ ହେବନାହିଁ । କଥାଟା ତାକୁ

ବୁଝିବାକୁ ହେବ ! କ'ଣ ଏଠି ଘଟିଚ୍ଛି ? ସର୍ଣ୍ଣୀର ଦୋଷ କ'ଣ ? କୁନ୍ତଳନା କାହିଁ ? ମାଙ୍ଗା ଟୋକା କାହିଁ ? ସନା ମିସ୍ତ୍ରି କାହିଁ ? କାହାକୁ ଆଉ ଦେଖି ପାରୁନି ନାହିଁ ଆବୁବକର୍ । ଚାରିଆଡ଼କୁ ଆଉଳା-ବାଉଳା ହୋଇ ଚାହୁଁଥାଏ ସେ । ଏହି ସମୟରେ କିଏ ଜଣେ ପଛରୁ ଆସି ତା' କାନ୍ଧରେ ହାତ ରଖିଲା ।

—କଉ ମିଆଁ ପୁଅ ? ସିର୍ଣ୍ଣି ସାଙ୍ଗରେ ବନ୍ଧାହୋଇ ମାମୁଘରକୁ ଯିବ କି ?

ଆବୁବକର୍ ଚାହିଁ ଦେଖିଲା ସ୍ଥାନୀୟ କଚେରୀର ଷ୍ଟାମ୍ପଭେଣ୍ଡର ଉଦ୍ଧ ମଉସା ।

—ସଲାମ ଉଦ୍ଧ ମଉସା ! କଥା କ'ଣ ?

—କଥା ଅଉ କ'ଣ ମିଆଁ ପୁଅ ? ସେଇ ମାଇକିନିଆଁ ଜାଣ ଧୀର ମହାନ୍ତିକି ଖାଇଲା ।

—କୋଉ ମାଇକିନା ?

—ସେଇ ଖାନକୀଟା ! ଧୀର ଯାହାକୁ ଆଣି ରଖିଥିଲା । ସେଇଟା ଗୋଟେ ଡାକୁଦଳରେ ଥିଲା । ଧୀରର ବି ସେଠାକୁ ଯିବା ଆସିବା ଥିଲା । ଅବଶ୍ୟ ଧୀର ସେ ଡାକୁଙ୍କ ସାଙ୍ଗରେ ନଥିଲା । ମାତ୍ର ଏଇ ମାଇକିନିଆ ଲେଭରେ ତାଙ୍କ ସାଙ୍ଗେ ଆତଯାତ ହେଉଥିଲା । ପୋଲିସ୍ ଡାକୁଦଳଙ୍କ ଆଖଡ଼ାକୁ ଘେରାଉକରି ଚାରିଜଣଙ୍କୁ ଧରିଛନ୍ତି ।

ଆବୁବକର୍ ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲା—ସେ ଠିକ୍ ଅଛି ମଉସା ! ଏଥିରେ ସିର୍ଣ୍ଣିର କସୁର୍ କୋଉଠି ?

—ସେ ମାଇକିନିଆର ବାପା ମାଆ ବର୍ଷକ ତଳୁ ଥାନାରେ ଏତଲା ଦେଇଥିଲେ । ଏ ଡାକୁମାନେ ତ ତାକୁ ନେଇଆସିଲେ, ତାଙ୍କ ପାଖେ ରଖିଥିଲେ । ଯେମିତ ଖୋଜାଖୋଜି ଚାଲିଲା, ସେଇ ଡାକୁମାନଙ୍କ ସାଙ୍ଗେ ପରାମର୍ଶ କରି ଧୀର ତାକୁ ନେଇଆସି ନିଜ ପାଖରେ ରଖିଲା; ଆଉ ମିଛରେ ତାକୁ ବାହାହୋଇଛି ବୋଲି ପ୍ରଚାର କରିଦେଲା । ଆରେ ମିଆଁ ପୁଅ ! ସତ କେବେ ଲୁଚିରହିବ ? ଆଜି ଯେତେବେଳେ ଏ ଡାକୁ ଚାରିଟାକୁ ପୋଲିସ୍ ଧରିଲା, ସବୁ କଥା ତାଙ୍କଠାରୁ ଜମାନ୍‌ବନ୍ଦି ମିଳିଲା—ପୋଲିସ୍ ଆସି ଧରି ବାନ୍ଧିଛନ୍ତି ଧୀର ମହାନ୍ତିକି; ଆଉ କ'ଣ ? ଧୀରଟା ପିଲା ଭଲ; କିନ୍ତୁ ବିଚାରା ଫସିଗଲା ଏଥିରେ । ଦୁର୍ଯୋଗ ଆଉ କ'ଣ ?

— ସେ ଡାକୁସବୁ କିଏ ମଉସା ?

—ଏ ଯୋଉ ଚାରିଟା ଟୋକା ସେଠି ବନ୍ଧାହୋଇଛନ୍ତି, ସେ ଚାରିଟାଯାକ ଏଠା ବଡ଼-ସାନ ଅଫିସରମାନଙ୍କ ପୁଅ । ଆଉ ଦୁଇଟା ଯେ ଖସିଯାଇଛନ୍ତି—ସେଥିରୁ ଗୋଟାକର ବାପା ହେଉଛନ୍ତି ପୋଲିସ୍ ଇନ୍‌ସପେକ୍ଟର, ଆଉ ଗୋଟାଏ ଜଣେ ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ପୁଅ ।

—ସେ ଯେ ହେଉନ୍ତୁ ମଉସା ! ଜାହାନ୍ନମାକୁ ଯାନ୍ତୁ ସେ ଶଳାମାନେ ! ଓଃ ! ମେରୀ ସିଣ୍ଡିକା କ୍ୟା ହୁଆ !! ଓଃ ! ୟା ଆଲ୍ଲା ! ମେରୀ ସିଣ୍ଡି ଉଚ୍ଛନ୍ନ ହୋଗୟା ! !

ଆବୁବକର୍ ସେଇଠି ମୁଣ୍ଡରେ ହାତ ଦେଇ ବସିପଡ଼ିଲା । ଷ୍ଟାମ୍ପଭେଣ୍ଡର ଭଦ୍ର ମଉସା ଆଉ କ'ଣ ସବୁ କହିଯାଉଥିଲେ; ମାତ୍ର ଆବୁବକର୍ କାନରେ ଆଉ କିଛି ପଶୁନଥିଲା । ତା'କୁ ଚାରିଆଡ଼େ ଅନ୍ଧାର ଦିଶୁଥିଲା । ବରଗଛର ଡାଳମାନ ଭାଙ୍ଗି ପଡ଼ୁଥିଲା ମଡ଼ମଡ଼ ହୋଇ ଅନ୍ଧାର ଭିତରେ । ତା'ର ପାଦତଳୁ ଆଶ୍ରା ଭୂଇଁ ଦବିଯାଉଥିଲା ତଳକୁ ତଳକୁ ।

□□□

# ଚକା ଭଉଁର

ଟ୍ରେନ୍‌ର ଗୋଟିଏ ସେକେଣ୍ଡ୍‌କ୍ଲାସ କାମରାରେ ମୁଁ ବାଧ୍ୟ ହୋଇ ଉଠିଲି । ଅନ୍ୟୂନ ଛଅଟି ଘଣ୍ଟା ମୋତେ ଏହି ଏକମାତ୍ର ସ୍ଥାନରେ ବନ୍ଦୀ ହୋଇ ଯିବାକୁ ହେବ । ସୁଟ୍‌କେଶ୍‌ଟା ର୍ୟାକ୍‌ରେ ରଖିଦେଇ ବିଛଣାଟାକୁ ପାଖରେ ରଖି ଏକ ରକମ ଅର୍ଦ୍ଧଶାୟିତ ଅବସ୍ଥାରେ ମୁଁ ଖବରକାଗଜ ପଢ଼ିବସିଲି । ଟ୍ରେନ୍ ଛାଡ଼ିଲା । କାମରାକୁ ଚାହିଁ ଦେଖେ ତ ବେଶି ଭିଡ଼ ନାହିଁ । ଗୋଟିଏ କୋଣକୁ ବସିଛନ୍ତି—ଜଣେ ପଚିଶ ଛବିଶ ବର୍ଷର ତରୁଣୀ । ପୋଷାକ ପରିଚ୍ଛଦ ଓ କେଶ ବିନ୍ୟାସାଦି ରୂପଛଟାରୁ ସେ ଯେ ଅତି ମାତ୍ରାରେ ଆଧୁନିକା ଏକଥା ସ୍ପଷ୍ଟ ଜଣାପଡ଼ୁଥିଲା । ପାଖରେ ତାଙ୍କର ଜଣେ ପୃଥୁଳକାୟ ପ୍ରୌଢ଼, ଆଉ ଗୋଟିଏ ସୁନ୍ଦର ଛୋଟ ପିଲା । ମୋର ପଛପଟକୁ ପାଞ୍ଚ-ଛଅ ଜଣ ଯୁବକ, ଆଧୁନିକ—କଲେଜ ଛାତ୍ର ବୋଧହୁଏ । ବୟସ ଅଠରଠାରୁ କୋଡ଼ିଏ ଭିତରେ । ସେମାନେ ଖୁବ୍ ଜୋର୍‌ରେ କଥା ଆରମ୍ଭ କରିଦେଇଥିଲେ । ସେମାନଙ୍କ ମଧ୍ୟରୁ ଜଣେ କିନ୍ତୁ ଖୁବ୍ ଗମ୍ଭୀର ହୋଇ ବସି ରହିଥିଲେ । ବେଶ୍ ସୁସ୍ଥ ଓ ସୁଶ୍ରୀ । ବୟସ ତିରିଶରୁ କମ୍ ହେବନି, ପୋଷାକରେ ସୁରୁଚି ଅପେକ୍ଷା ସୁଦୃଶ୍ୟ ଭାଗଟାଇ ବେଶି । ମାନେ ଅତି ମାତ୍ରାରେ ରଙ୍ଗମଞ୍ଚୋପଯୋଗୀ । ସେ ସିଗ୍ରେଟ୍ ଟାଣୁଥାନ୍ତି ଏବଂ ବାୟୁମଣ୍ଡଳରେ ଅସଂଖ୍ୟ ଧୂମକୁଣ୍ଡଳୀର ସୃଷ୍ଟି କରି ଫେର୍ ତାକୁ ଧ୍ୱଂସ କରୁଥାନ୍ତି । ଭଦ୍ରବ୍ୟକ୍ତି ବୋଧେ ଜଣେ ଅଭିନେତା ।

ମୁଁ କିନ୍ତୁ ଅତି ନିଃସଙ୍ଗ, ଅତି ଅପରିଚିତ ଭାବେ ଏକା ଏକା ବଡ଼ ଛଟଛଟ ହେଉଥାଏ ! ଆଃ, ତରୁଣୀଟି ସଙ୍ଗେ ଭଲା ଟିକେ—ଆଳାପ ଥାଆନ୍ତା ! ବାହାରେ ଶ୍ରାବଣର ଝଡ଼ ମାତି ଉଠିଛି । ବାୟୁମଣ୍ଡଳ ଶୀତଳ କିନ୍ତୁ ଅସ୍ଥିର । ଦୁଇପାର୍ଶ୍ୱରେ ଚଳମାନ ନୀଳ-ପର୍ବତ ଶ୍ରେଣୀ—ବୃଷ୍ଟିର ଧାରା ବଢ଼ି ଚାଲିଛି । ଏ ଦୁର୍ଦ୍ଦିନରେ କିଏ ନିଜର ଜାୟାକୁ ଘରେ ଛାଡ଼ି ବିଦେଶକୁ ବାହାରେ ? ବଡ଼ ଚିଡ଼ା ଲାଗିଲା—ଛି ଛି—ମନେପଡ଼ିଲା—

"ନୀଲ୍ ନବଘନେ ଶ୍ରାବଣ ଗଗନେ
ତିଲ୍ ଆଜ ଠାଇଁ ନାହିଁରେ—
ଓଗୋ ଆଜ୍ ତୋରା
ଯାସ୍‌ନି ଗୋ ଘର ବାହିରେ"

ଆଉ ଯାସନି !! ଆମ ବାପା ଯିଏ ସିଏ ଯିବେ ସରକାର୍ ଘରେ ଚାକିରି ! ହାତୁ, ମୋର ଚାକିରି ମୁହଁରେ ନିଆଁ—ମୋ ମୁହଁରେ—ଚଣ୍ଡୁ ଧୂଆଁ । ପାନ ଖଣ୍ଡେ ବାହାରି କରି ଖୁବ୍

ଜୋର୍‌ରେ ଗୋଟାଇ ବସିଲି । ତନ୍ୱୀ ତରୁଣୀଟି ଆଡ଼କୁ ଥରେ ଦୃଷ୍ଟି ପକାଇଲି । ଛି ଛି ପରଦାରେଷୁ ମାତୃବତ୍ । ( ଠିକ୍ ବାହାହବା ପରେ ଇଏ ମଟୋଟା ଉପରେ ମୁଁ ଜୋର ଦେଇଛି । ) ଫେର୍ କାଗଜରେ ମନ ଦେଲି । ନା ଆଉ ହବନି । କଅଣ ଏ କାଗଜଟାକୁ ଏତେ ପଢ଼ିବ ହେ ? ଆଜିକାଲି ଖବରକାଗଜଗୁଡ଼ାକ ପୋଷ୍ଟକାର୍ଡ ସାଇଜ୍ ହେଲେ ବି ବେଶ୍ କାମ ଚଳନ୍ତା । ମୋ ପଛପଟ ତରୁଣ-ମଣ୍ଡଳୀକୁ ଚାହିଁଲି । ଏମାନଙ୍କ ସଙ୍ଗେ ଆଡ୍ଡାଟା ଜମାଇପାରିଲେ ବେଶ୍ ହୁଅନ୍ତା । ଗପସପରେ ତ ସମୟଟା କଟିଯାନ୍ତା ; କିନ୍ତୁ ସେମାନେ ଯେଉଁ ପ୍ରକାର କଥାବାର୍ତ୍ତା ହେଉଥିଲେ—ସେଥିରେ ମୁଁ ନିଜକୁ ମିଶାଇ ପାରିଲିନାହିଁ; ବରଂ ମୁଁ ବଡ଼ ଅସନ୍ତୁଷ୍ଟ ହୋଇଉଠୁଥିଲି । ମୋର ବୟସ, ଅନୁଭୂତି ଓ ଅଭିଜ୍ଞାନ ଏପରି ଏକ ସ୍ତରକୁ ଆସିଗଲାଣି, ଯେଉଁଥିରେ କି କେବଳ ଶିଙ୍ଗ ଭାଙ୍ଗିଦେଇ ମୁଁ ନିଜକୁ ବାଛୁରି ବୋଲି କହି ବାଛୁରିଦଳରେ ମିଶିପାରିବି ନାହିଁ । ନାଃ, ଯେତେସବୁ ପାଜି ସୈତାନର ଦଳ । ଯୁଆଡ଼େ ଯାଅ—ଖାଲି ଗୁଡ଼ାଏ ହେଁ ହେଁ ଫେଁ ଫେଁ । ଏ ଯୁଗଟା କି ହାଲୁକା ହେଇଗଲା ହେ ? ସିନେମା, ସିନେମା—ଏଇ ସିନେମା ହିଁ ଏହାର ମୂଳ କାରଣ । ନର୍ଗିସ୍, ସୁରେୟା, କାମିନୀ, କୁକୁ—ଛି ଛି ଛି—ଆଧୁନିକ ଯୁବକର ମଥା ଖାଇଗଲେ ଏମାନେ ! କିନ୍ତୁ ମୁଁ କ'ଣ କରିବି ? କିଛି କ'ଣ ପଢ଼ିହେବ ? ଏଗୁଡ଼ାକ ଯେଉଁ ହଲ୍ଲା କରୁଛନ୍ତି !! କଣ ଯେ କଥାବାର୍ତ୍ତା ହେଉଛନ୍ତି ଛତରଗୁଡ଼ାକ ! ସିଗ୍ରେଟ୍ ଖଣ୍ଡେ ଧରାଇ ଲାଭାଟୋରିକୁ ଗଲି । ତାପରେ ଫେରିଆସି ଦେଖେ ତ—କାମରାଟା ଚୁପ୍‌ଚାପ୍, ପିନ୍ ଖଣ୍ଡା ପଡ଼ିଲେ ବି କାନକୁ ଶୁଭିବ । ଆଶ୍ଚର୍ଯ୍ୟ ହେଲି । କଣ କଥା ? ଉଦ୍ଦାମ—ଉଚ୍ଛୃଙ୍ଖଳ—ବିକ୍ଷୁବ୍‌ଧ ଯୌବନ ସାଗର ହଠାତ୍ ନିସ୍ତବ୍‌ଧ ହୋଇଗଲା କିଆଁ ? କିଛି ଘଟିଲା କି ? ତରୁଣୀଟି ଆଡ଼କୁ ଚାହିଁଲି । ନାଁ—ତାଙ୍କ ମୁଖମଣ୍ଡଳରେ କୌଣସି ପରିବର୍ତ୍ତନ ନାହିଁ । ସେହିପରି ସ୍ଥିର, ଗମ୍ଭୀର ଓ ଅବିଚଳିତ ଭାବେ ସେ ବସିରହିଛନ୍ତି । ତେବେ ଘଟଣା କ'ଣ ? ସେ ଯାହାହେଉ ଏଇ ଶାନ୍ତିଟା ହିଁ ଭଲ । ହେ ପ୍ରଭୁ ! ଗୋଟେ ସ୍ୱସ୍ତିର ନିଃଶ୍ୱାସ ପକାଇଲି । "ଗଡ଼ ସେଭ୍ ଦ ପ୍ରାଇମ୍ ମିନିଷ୍ଟର !!"

ସେଇ ଉଚ୍ଛୃଙ୍ଖଳ ଯୁବକମାନଙ୍କ ମଧ୍ୟରେ ଜଣେ କହି ଉଠିଲେ, "ହଁ କୁହନ୍ତୁ ସାର୍ ! ଆଉ ଡେରି କରନ୍ତୁ ନାହିଁ—ଏ ପାଗଳଟାକୁ ବଫିଟିଙ୍ଗ୍ ହବ ଯେମିତି ।"

"ହଁ ଶୁଣ ।" —ସେଇ ଗମ୍ଭୀର ଧୂମପାୟୀ ପ୍ରୌଢ଼ ବ୍ୟକ୍ତି—ଆରମ୍ଭ କଲେ—"ସେଇଟା ମୋର କଲେଜରେ ଫିଫ୍‌ଥ୍ ଇଅର । ସେତେବେଳକୁ ଅଭିନୟରେ ମୋର ଖ୍ୟାତି କେବଳ କଲେଜରେ ଆଉ ସୀମାବଦ୍ଧ ହୋଇନାହିଁ, ସାରା ସହରରେ ମୁଁ ଚାଞ୍ଚଲ୍ୟ ଆଣି ସାରିଥାଏ । ଖେଳୁଆଡ଼ ବି ତ ମୁଁ କମ୍ ନଥିଲି !! ବକ୍ତୃତାରେ ବି ମୋତେ କେହି ଟପି ପାରୁନଥିଲେ । ମାତ୍ର ଏହି ଅଭିନୟ ହିଁ ମୋର ଅନ୍ୟ ସମସ୍ତ ଉପଗୁଣଗୁଡ଼ାକର ସମାଧି ଦେଇଦେଲା । ମୋର ସ୍ୱାସ୍ଥ୍ୟର ପରିବର୍ତ୍ତନ ଘଟିଛି—ମାତ୍ର ମୋ ରୂପର କିଛି ପରିବର୍ତ୍ତନ ଘଟନାହିଁ । ସାଙ୍ଗସାଥୀ ତ ମୋର ନାମ ବଦଳାଇ 'କନ୍ଦର୍ପ' ବୋଲି ହିଁ

ମୋତେ ଡାକୁଥିଲେ । ମୁଁ ବି ପ୍ରତିବାଦ କରୁନଥିଲି । କନ୍ଦର୍ପ ଯେତେ ସୁନ୍ଦର ହେଉ, ତାର କ'ଣ ମୋ ପରି ସୁନ୍ଦର ସ୍ୱାସ୍ଥ୍ୟ ପୁଷ୍ଟି ଦେହ ଥିଲା ? ସେଇଟା ତ ବିଦେଶୀ—"

"ନାଁ, ନଥିଲା—କିନ୍ତୁ କ'ଣ ହେଲା ? ଘଟଣାଟା କଣ ହେଲା ?—ଆଦିଣଙ୍କ ରୂପରେ କଣ କେହି—ହଁ କୁହନ୍ତୁ ?" ଗୋଟେ ଚଲାଆଖିଆ, ଫାଙ୍କାଗାଲିଆ ପାତଳା ଟୋକା ପଚାରିଲା ।

"ଆମ କଲେଜରେ ଗୋଟେ ଝିଅ ବି ପଢ଼ୁଥିଲା ମୋ ଉପର କ୍ଲାସରେ—"

"ବାଃ ବାଃ—ଜମିଲା—ଜମିଲା—ବାସ୍ ବାସ୍—ଗୁଲି—ଗୁଲି—ଝିଅ—ଯୌବନ—ପ୍ରେମ—ଅଭିନୟ—ରୋମାନସ୍—ଏଲିପ୍‌ମେଣ୍ଟ—ଗୁଲି ଗୁଲି ସାର୍"—ସମସ୍ତେ ଚିତ୍କାର କରିଉଠିଲେ ।

ମୁଁ ଝରକା ବାଟେ ବାହାରକୁ ଛେପ ପକାଇଲି । କ'ଣ ଏମାନେ ମଦ ଖାଇଛନ୍ତି ? ହ୍ୟାଲିଧ ମଦୁଆଗୁଡ଼ାକ—ଛେନା ପାଠ ପଢ଼ୁଛନ୍ତି କଲେଜରେ ।

"ଭାରି ସୁନ୍ଦର ଝିଅ ଥିଲା, ଆମ କଲେଜରେ ସର୍ବଶ୍ରେଷ୍ଠ ସୁନ୍ଦରୀ—ମିସ୍ ରେଭେନ୍‌ସା ବୋଲି ଆମେ ତାକୁ ଡାକୁଥିଲୁ ।"

"ମିମେସ୍ ଇନ୍ଦ୍ରାଣୀ ରହେମାନ୍ ବା ମିସ୍ ଇଣ୍ଡିଆଠାରୁ କ'ଣ ସେ ବେଶି ସୁନ୍ଦର ଥିଲା ସାର୍ ?"

ଗୋଟେ ଟେଣ୍ଟକଟା, ବାହାଡ଼ାଦାନ୍ତୀ ଟୋକା ଦାନ୍ତ ନକୁଟି ଏକଥା—ପଚାରିଲା ବେଳେ ମୋ ଇଚ୍ଛା ହେଉଥିଲା—ତା ମୁହଁରେ ମୁଖୀ ମାରି ତା' ବାହାଡ଼ାଦାନ୍ତଗୁଡ଼ାକ ଭାଙ୍ଗି ଦିଅନ୍ତି !

"ହଁ, ତା' ନାଁଟି ଥିଲା ରତି—ମିସ୍ ରତି ମହାପାତ୍ର" କାମରା ଭିତରର ଗମ୍ଭୀରା ତରୁଣୀଟି ମୋ ଖବରକାଗଜ ଦରକାର କଲେ—ମୁଁ ତାଙ୍କୁ ବଢ଼ାଇଦେଲି । ସେ ସେଥିରେ ହିଁ ମନୋନିବେଶ କଲେ ।

"ରତି ମହାପାତ୍ରକୁ କିନ୍ତୁ ସହଜ ମନେକରିବନି ତୁମେମାନେ । ସେ ଥିଲା ଭାରି ଅଲାଜୁ ମଉଗ୍ଣୀ—ଭଲ ପଢ଼ୁନଥିଲା । କିନ୍ତୁ କଲେଜ ହଲରେ ବକ୍ତୃତା ହବ ତ ରତିକୁ ନ ଡାକିଲେ ବି ତା'ର ସେଠି ଅବାଧ ଗତି । ମିସ୍ ରତି ପାଇଁ କିନ୍ତୁ କଲେଜର ପନ୍ଦରଣହ ମତ ଦନ- ସ୍ୱିତ ଛଟପଟ ହୋଇ ଯାଉଥିଲା । ବ୍ୟକ୍ତିଗତ ଭାବେ ସେ ଏତେ ଗମ୍ଭୀର—ଏତେ ଉଦ୍ଧତ —ଏତେ ଅସହିଷ୍ଣୁ ଯେ, ତା ସଙ୍ଗେ କଥାବାର୍ତ୍ତା କରିବା ଅଧ୍ୟାପକମାନଙ୍କର ବି ସାଧ୍ୟାତୀତ ଥିଲା । ତା' ପଛରେ ବହୁତ ଟୋକା ଲାଗିଥିଲେ । ମାତ୍ର କେହି ଯେ ତାକୁ ପାଲରେ ପକାଇଛୁ, ଏ କଥା ଏବେବି ମୁଁ ବିଶ୍ୱାସ କରିପାରିବନି ! ମୋର ମନେ ହେଉଥିଲା—ପ୍ରେମ କଣ ସତେ ସେ ଜାଣେନା—କରୁଣା କଣ—ସହାନୁଭୂତି କ'ଣ—ସତେ ବା ତାକୁ

ଜଣାନଥିଲ ! ସେ ଥିଲା ରାଧାନାଥଙ୍କର 'ଚନ୍ଦ୍ରଭାଗା' ଭଳି । ସେ ରୂପବତୀ ଆଉ ଯୁବତୀ—ମାତ୍ର ସତେ ବା ତାର ଜମା ହୃଦୟ ନଥିଲା !!"

ଗୋଟେ ଭାରା ଗେଣ୍ଡାପାଟିଆ ଟୋକା ତା'ର ଖୋଲା କୋରଡ଼ିଆ ଆଖିରେ କାରୁଣ୍ୟ ଆଣି ବଡ଼ ନିରୁତ୍ସାହ ଭାବେ ପଚାରିଲା—"କିନ୍ତୁ ତାର କ'ଣ ଆଉ ହୃଦୟ ଆସିଲା ନାହିଁ ସାର୍ ?"

ମୋର ଇଚ୍ଛା ହେଲା ସେଇ ବ୍ରଣମୁହାଁ—ହୃଦୟ ଚୋରା—ହୃଦବିରହୀ ପାଗଳା ଟୋକାଟାର ସରୁଆ ତଣ୍ଟିଟାକୁ ଚିପିଦେଇ ବେକ ପରି ମୋଡ଼ିଦେଇ ବାହାରକୁ ଫୋପାଡ଼ି ଦିଅନ୍ତି !! ବଦମାସ ଟୋକା—ମାଟ୍ରିକରେ ଦୁଇଥର ଫେଲ୍ ହୋଇ ଏଇଟା ନିଶ୍ଚୟ ଥାର୍ଡ ଡିଭିଜନରେ ପାସ କରିଛି । ଆଉ ଆଇ. ଏ. ରେ ଏଇଟା ନିଶ୍ଚୟ ଲକ୍ଷକରେ ଏ ଯାବତ୍ ବି ଫେଲ୍ ହେଉଛି । ଆଉ କେଉଁଥିଲାଗି ନୁହେଁ—ଖାଲି ଏଇ ହୃଦୟ, ହୃଦୟ ହୋଇ ବ୍ରହ୍ମଚର୍ଯ୍ୟ ନଷ୍ଟ କରି, ଏଇଟା ଦିନେ ଏମିତି ମରିଯିବ—ରାସ୍କେଲ୍ !

"ଆରେ ଶୁଣ ! ହୃଦୟଟା କ'ଣ ତାର ଜମା ନଥିଲା ? ମାନେ ପ୍ରେମିକାର ହୃଦୟ ନଥିଲା ତାର । ତାର ରୂପ, ତାର ଚାଲି—ତାର ବେଣୀ—ସବୁ ଠିକ୍ ଥିଲା । ମାତ୍ର ସେ ଗୋଟେ ରାଣୀ ଦୁର୍ଗାବତୀ—କମ୍ବା ଚାନ୍ଦବିବି—ନଇଲେ ଜୋଆନ୍ ଅଫ୍ ଆର୍କ—ନଇଲେ ତମ ସିନେମାର ସେଇ—ସେଇଟା—କ'ଣ ତା' ନାଁଆଟାଟି—ଫୁଲଦୀପ କାଉର୍ ।"

"ହାଃ ହାଃ ହାଃ—ବେଶ୍ ପାସନ୍ ପ୍ରବ୍ଲେମ୍ଙ୍କ ତାହେଲେ; ବେଶ୍ ବେଶ୍ ଚଳିବ ସାର୍—ଚଳିବ ?" ତରୁଣ ଜନତା ଚିତ୍କାର କରିଉଠିଲେ !

ମନେ ମନେ ରାଗିଉଠିଲି । ଆରେ ସବୁ କୁଳାଙ୍ଗାରର ଦଳ । ପାଷଣ୍ଡ—ଘୋଡ଼ାମୁହାଁ—ସଇତାନଗଣ ! ତୁମର ପାସନ୍ ଯେ ଚରମକୁ ଛୁଟି ନାସନ୍ ପାଇଁ କବର ଖୋଳି ସାରିଲାଣି ! ପାସନ୍ ପାସନ୍—ନାସନ୍—ଫ୍ଯାଲ୍ସ ରିସନ୍ ଚିନ୍ତା କଲା ବେଳକୁ ଏ ଫାସନ୍ ବି ଆଉ ନଥିବରେ କୁଳାଙ୍ଗାରେ । ଏ ଟ୍ରେନ୍ଟା ଏଠି ଓଲଟି ପଡ଼ନ୍ତା କି—ମୁଁ ମରନ୍ତି ପଛେ, ଏ ଗୁଡ଼ାକ ସମୂଳେ ଧ୍ୱଂସ ହୋଇଯାନ୍ତେ ! ଧ୍ୱଂସ ହୁଅ—ନଷ୍ଟ ହୁଅ—ଭ୍ରଷ୍ଟ—ଫ୍ଯାଲ୍ସ ବାଳୁଙ୍ଗା—ଗୁଡ଼ାକ !

"ତା'ପରେ—ତାକୁ ପ୍ରେମ କରିବାକୁ କିନ୍ତୁ ସମସ୍ତେ ବ୍ୟସ୍ତ ହୋଇ ପଡ଼ୁଥିଲେ । ମାତ୍ର ତୁମେମାନେ ଜାଣ—ଏ ପ୍ରେମ ଫ୍ରେମ ବ୍ୟାପାରରେ ମୁଁ କେଡ଼େ ଅପାରଗ । ମାନେ ଏ ପ୍ରେମ ଫ୍ରେମରେ ମୋର ଆଦୌ ଆସ୍ଥା ବା ବିଶ୍ୱାସ ନ ଥିଲା । ମୁଁ ନିଜକୁ ନେଇ ଏତେ ବ୍ୟସ୍ତ ଥିଲି ଯେ, ମୋର ଏ ସବୁର ଅଭାବ ବୋଧ ଆସିବାକୁ ବି ସମୟ ନଥିଲା । ତା'ପରେ ଯେତେ ଓସ୍ତାଦ ଅଭିନେତା ହୁଏ ପଛେ—ଏ ସବୁ ବ୍ୟାପାରରେ ମୁଁ ଟିକେ ସାଇ (Shy) । ବହୁ ଝିଅଙ୍କ ସଙ୍ଗେ ମିଶିଚ—ଅଭିନୟ କରିଚ; ମାତ୍ର ପ୍ରେମ ଗୋଟେ କେମିତି

କଣ କରାଯାଏ, ଏକଥା ସତ କହୁଛି ମୁଁ ଜାଣିନଥିଲି । ମୋତେ ହୁଏତ କେବେ କଏ ଭଲ ପାଇଥିବେ ନଥିବେ; ମାତ୍ର ମୁଁ କାହା ପ୍ରତି ଚେଷ୍ଟା ବି କରିନି ! ସୁନ୍ଦରୀ ଝିଅଟିକୁ ଦେଖିବାକୁ ଇଚ୍ଛା—ବାସ୍ ସେତିକି କେବଳ ! ଆଉ ତା ପାଇଁ ବଧୂଗ୍ର—ବନଦ୍ରଯାମିନି ହ୍ୱା-ହୁତାଶ—ଦୀର୍ଘଶ୍ୱାସ—ବିରହ କଳିକ—ବିରହ କବିତା—ବାବା; ଏସବୁ ମୋର ଜମା ନଥିଲା । ✓

( ସମସ୍ତେ ଗମ୍ଭୀର ଓ ଉତ୍ସୁକ ହୋଇ ଉଠିଲେ—ତା'ପରେ ଘଟଣାଟା କେମିତି ଭାବେ କୁଆଡ଼କୁ ଗତି କରିବ ? )

ମାତ୍ର ଏହି ମିସ୍ ରତି ପ୍ରତି ମୋ ମନ ଟିକେ ନରମିଯାଇଥିଲା—ସେମିତି କିଛି ନୁହଁ—ଏଇ ଟିକେ—ମାନେ—ମାନେ—ମାନେ—

"ରୋମାନସ୍ ସାର୍ ରୋମାନସ୍—ଲଭ୍—ପ୍ରେମ—ଭଲପାଇବା—ମୋହବତ୍—ଲୁଚଉଛନ୍ତି କାହିଁକି ସାର୍ ? ସଫା କହିଯାଆନ୍ତୁ ।"

ଆଃ, ରୋମାନସ୍ ନା ତୁମ ମୁହଁରେ ପୋଡ଼ା ପାଉଁଶରେ ବଁଶନାଶକ ନରକଗାମୀର ଦଳ !! ବଜାଉଗୁଡ଼ାକର ଧୈର୍ଯ୍ୟ ବି ଟିକେ ନାହିଁ ! ମୁଁ ଚଡ଼ିଉଠୁଥିଲି ।

"ହଉ—ଆଚ୍ଛା ହେଲା, ଏବେ ତୁମ କଥା ମାନୁଛି; ମାତ୍ର ସେଥିପାଇଁ ଗୋଟେ ଚେଷ୍ଟା, ଗୁଡ଼ାଏ ପରିଶ୍ରମ କରି ତାକୁ ମୋ ପାଲରେ ପକାଇବା ପାଇଁ ମୋର ଜମା ଇଚ୍ଛାନଥିଲା । ସେ ଯେ ମୋତେ ଅଧିକାଂଶ ବେଳେ ଅନାଇରହେ, ଏଇଥିରୁ ହିଁ ମୁଁ ବୁଝୁଥିଲି ସେ ବୋଧେ ମୋର ସଖ୍ୟ ଟିକେ ଚାହୁଁଥିବ ଅବା !! ମାତ୍ର ଏତିକି ଛଡ଼ା, ତା' ଆଡ଼ୁ ବି କିଛି ପ୍ରଚେଷ୍ଟା ନଥିଲା । କିନ୍ତୁ ମୋତେ ଏଇଟା ବି ଖରାପ ଲାଗେ । ମୋତେ ଗୋଟେ କଏ ଅନ୍ୟ ସମୟରେ ଡାହାଣୀ ଭଳି ଚାହିଁରହିବ—ଏକଥା ମୁଁ ଏକଦମ୍—ସହିପାରୁ ନଥିଲି । ମୁଁ କ'ଣ ମଦନ ଦୋକାନର କରେଇଏ ରାଜଭୋଗ ? ଛେନା ଡାଲ୍ଲିଆ ? ମୁଁ କ'ଣ କାଗଜ ପାଚିଲା କଦଳୀ ? ମୁଁ କଣ ଝୁଡ଼ାଏ ପାଚିଲା ବାଇଗଣପଲେଇ ଆମ୍ବ ? ହିଁ ଅଭିନୟ ବେଳେ—ସେ ଅଲଗା କଥା । ଯେଉଁଦିନଠାରୁ ରତି ମୋତେ ଚାହିଁଛି ବୋଲି ମୁଁ ଲକ୍ଷ୍ୟ କଲି, ସେଦିନୁଁ କିନ୍ତୁ ତା' ଉପରେ ମୋର ଦେହ ଚଡ଼ିଗଲା । ଲାଇବ୍ରେରିରେ କମ୍ବା ବାରଣ୍ଡାରେ ସେ ମୋତେ ଚାହିଁଲାବେଳେ ମୋର ମନେ ହୁଏ, ରତି ସତେ ଅବା ଗୋଟେ କଞ୍ଚାଡାହାଣୀ । ଆଖିରେ ଚାହିଁ ଚାହିଁ ମୋର ରକ୍ତ ଶୋଷି ଖାଉଛି । ସତ କଥା ପିଲେ—ରତିର ଏଡ଼େ ସୁନ୍ଦର ମୁହଁ—ଏଡ଼େ ସୁନ୍ଦର ଓଠ—ଏଡ଼େ ସୁନ୍ଦର ଦାନ୍ତ—ଏଡ଼େ ସୁନ୍ଦର କେଶ; ମାତ୍ର ମୋତେ ସେ ଏଣିକି ଦେଖାଗଲା ସତେକି ସେ ଗୋଟେ ଡାଡ଼କା ଅସୁରୁଣୀ । ଆଉ ମୁଁ ତା' ଆଗରେ ବାର-ତେର ବର୍ଷର ସରଳ, ଚପଳ, ଛଳଛଳ କିଶୋର ରାମ ବା ଲକ୍ଷ୍ମଣ !! ମିସ୍ ରତି ମହାପାତ୍ର ପ୍ରତି ମୋର ଘୃଣା ବି ଆସିଗଲା । ଆଉ କେଉଁଥିପାଇଁ ନୁହଁ—ଖାଲି ସେ ମୋ ଆଡ଼କୁ, ଅନେକ ସମୟରେ ମୋ ମୁହଁକୁ ଅନେଇ ରହେ ବୋଲି । କିନ୍ତୁ ଶୁଣିବ, କଅଣ ହେଲା ଟ୍ରାଜେଡ଼ୀ ?

ରଥ ସବୁବେଳେ ଯାଏ ଟାଉନ୍ ବସ୍‌ରେ । ମୁଁ ବ ଦନେ ଦନେ ସେଇଥିରେ ଯାଏ; ମାଫ ରଥ ଯୋଗୁଁ ନୁହଁ । ଯଦଓ କଂଟକତଣ୍ଡା ପିଲ ବ ଗୃଦ୍ଧନାଚଉକର ବସ୍‌ରେ ଉଠି ଯାଆନ୍ତି—ଖାସ୍ ସେହ୍ବ ରଥକୁ ଦେଖି ଦେଖି ଯିବେ ବୋଲ ! କେଜାଣି କ'ଣ ଚିକେ ଘଟଣା ଘଟିଯାଇପାରେ !! ମାଫ ତୁମକୁ ତ କହ୍ଦଲ—ରଥ ମୋର ଧଥକୁ ଟାଳ ପାର୍‌-ନଥିଲ । ତାକୁ ଦେଖିଲେ ବରଂ ମୁହଁ ବୁଲଇ ଦେଉଥିଲ । ମାଫ ଦୁର୍ଭାଗ୍ୟ ତ । ମୁଁ ଜାଣିନ—ସେଇ ବସ୍‌ଟାରେ ରଥ ଉଠିଛୁ ।

ଉଠି ତ ଗଲ; ମାଫ ସେ ଭତରଟାରେ ବସିବାକୁ ଜାଗା ନାହିଁ । ଯୋଷଣ ବ ପଡ଼ବନ ତଳେ । ମୋର ଫାଉଣ୍ଟେନ୍ ଓ ମନବ୍ୟାଗ୍‌ଟାକୁ ମୁଠେଇ ଧଇଲ । ଆଉ ତ ଜାଗା ନ ଥିଲ । ମାଫ ରଥ ବସିଥିବା ଲେଡ଼ିଜ୍ ସିଟ୍‌ରେ ଦୁଇଟି ଜାଗା ଖାଲ ଥାଏ । ମୁଁ ରଥକୁ ଗୃହିଁଲ । ଆଉ ତା ପାଖ ଖାଲ୍ ଜାଗାଟା ଇ ମୋର ବେଶି ଆକର୍ଷଣୀୟ ହୋଇ ଉଠିଲ । ରଥ ପାଖ ରଡ୍‌ଟାକୁ ଧଇ ମୁଁ ଠିକ୍ ତା ସିଧା ଠିଆହୋଇଥାଏ ।

ପୂର୍ବଦନ ଫୁଟବଲ୍ ଖେଳ ପାଦଟା ଏତେ ଦରଜ ହୋଇଥାଏ ଯେ—ମୁଁ ସେଠି ଗୋଟେ ବ୍ୟାଣ୍ଡେଜ ଗୁଡ଼େଇଦେଇଥିଲ ! ପାଦଟା ଦରଜ ବ ଲଗୁଥାଏ । ଠିଆ ହେବାକୁ ଏତେ ସମସ୍ତ ବଡ଼ କଷ୍ଟ ହେଉଥାଏ । କେଉଁଠି ଚିକେ ଜାଗା ଖାଲ ହେଲେ ବସିପଡ଼ନ୍ତି; ମାଫ କେହ୍ବ କଣ ଉଠିବେ ନାହିଁ ? ରଥ ଉପରକୁ ମନ ଚଢ଼ିଲ । ମନେ ମନେ ଗାଳି-ଦେଲ—ରଥ ! ମାଧ୍ୟାବନୀ ରଥ ! ଡାହାଣୀ ରଥ ! ଚରୁଗୁଣୀ ରଥ ! ପିଚାଶୁଣୀ ରଥ ! ଚଞ୍ଚଳ ଏ ବସ୍‌ରୁ ଓହ୍ଲାଇଯା—ତୋର ସ୍ତାବକଗଣ—ତୋର ପୂଜକଗଣ—ତୋର ଶିକାରଦଳ ଏ ଗାଡ଼ି ଶୀଘ୍ର ଖାଲ କରନ୍ତୁ । ମୁଁ ବେଚ୍ବ ଚିକେ ଆରାମରେ ବସେ । ମୁଁ ଗୋଟିଏ ଖାଲ୍ ଜାଗା ପାଇଁ ଏତେ ବ୍ୟାକୁଳ ଥିଲ ଯେ, ରଥପାଖ ଖାଲଜାଗାଟାକୁ ମୋର ଅଜାଣତରେ ମୁଁ କେତେବେଳୁ ଯେ ଗୃହିଁ ରହ୍ବଛୁ, ମୋର ଆଉ ଖିଆଲ ନାହିଁ । ରଥ ବ ମୋର ମୁହଁକୁ ଠିକ୍ ସେମିତ ଗୃହିଁ ରହ୍ବଛୁ । ଆଉ ବୋଧେ ମୋ ଆଖିରେ ଚଶମା ଥିବାରୁ ରଥ ଭାବୁଥିଲ ମୁଁ ତାକୁ ଗୃହିଁ ରହ୍ବଛୁ । ହଠାତ୍ ରଥ ତାର ବାଡ଼ମିଣ୍ଟନ୍ ର‍୍ୟାକେଟ୍‌ଟାକୁ ନଜ କୋଲକୁ ଟାଣିଆଣି କହ୍ବଲ—"କାଛୁ ମନେକରବେନାହିଁ—ଯଦ କଷ୍ଟ ହେଉଚ, ଦୟାକରି ଏଠି ବସନ୍ତୁ । ଜାଗା ବ ବହୁତ ଖାଲ ଅଛୁ—ମୋର କାଛୁ ଆପତ୍ତି ନାହିଁ ।"

ଆଗରୁ ପ୍ରସ୍ତୁତ ନ ଥାଇ ବ ଚଟାପଟ୍ ଉତ୍ତର ଦେଲ—"ମୋର କନ୍ତୁ ଆପତ୍ତି ଅଛୁ ।"

ଆହତ ହେଲ ରଥ । ପଦାହତ ନାଗୁଣୀ ପର ଫଁ କର ଉଠିଲ—"ଆପତ୍ତି ଅଛୁ—ମାନେ ?"

"ହଁ ଆପତ୍ତି ଅଛୁ—ଆଉ ଆପଣଙ୍କର ଏ ଅଯାଚତ ଅନୁଗ୍ରହ ଲଗି ବାସ୍ତବକ୍ ମୁଁ ଦୁଃଖିତ ।"

"କିନ୍ତୁ କାହିଁକି ? ଅନୁଗ୍ରହଟା କି ଖାଲି ଅଯାଚିତ ବୋଲି ଏତେ ଆପତ୍ତି ?

"ନାଁ ଅଯାଚିତ ଯୋଗୁ ନୁହେଁ—ଅନୁଗ୍ରହଟା ହିଁ ମୋତେ ଭାରି ବାଧେ ।"

"ମାନେ—କାହାର ଅନୁଗ୍ରହକୁ ବି ଆପଣ—"

"ହଁ; କିନ୍ତୁ ବିଶେଷତଃ ନାରୀର ଅନୁଗ୍ରହକୁ ମୁଁ ଆଦୌ ସହ୍ୟ କରିପାରେନା"

"କିନ୍ତୁ କାହିଁକି ?"

"କାରଣ ମୋର ପୌରୁଷ ଅଛି ବୋଲି ।"

"ସତେ !" ଶ୍ରୀମତୀ ରଥ ଝଲକାଏ ହସି ପୁଣି କହିଲେ—

"ପୌରୁଷ ? ମିଲର୍ଡ !! କିନ୍ତୁ ମୋର ତ ମନେ ହୁଏ, ଆପଣ ନିଜର ପୌରୁଷ ସମ୍ବନ୍ଧରେ ସର୍ବଦା ଏତେ ସଚେତନ ଯେ, ସେଥିରେ ଆପଣଙ୍କ ପୌରୁଷ ନଥିବା କଥାଟା ହିଁ ବେଶି ଜଣାଯାଏ ।"

"ଯୁକ୍ତି କରିବା ଅବସ୍ଥାରେ ମୁଁ ନାହିଁ—ଦୟା କରି ଆପଣ ବାକ୍‌ସଂଯମ କରନ୍ତୁ ।

ରଥ ପୁଣି କହିଲା—"କିନ୍ତୁ ଆପଣ ପୁଣି ମୋର 'ଦୟା' ଉପରେ ନିର୍ଭର କଲେ ଯେ—ବିଶେଷତଃ ଜଣେ ନାରୀ ପାଖରେ ଏପରି ଭାବେ ଦୟା ଯାଚ୍ଞା କରିବାଟା ଆପଣଙ୍କ ପରି ପୁରୁଷ ପକ୍ଷରେ—"

"କିନ୍ତୁ ଆପଣ କଣ ନାରୀ ? "

" କାହିଁକି—ସୂର୍ଯ୍ୟାନ୍ଧ ସୂର୍ଯ୍ୟକୁ ଚିହ୍ନି ନ ପାରିଲା ଭଳି ଆପଣ ନାରୀକୁ ଦେଖି ପାରୁନାହାନ୍ତି । ଆପଣ, ନାରୀ ଅନ୍ଧ ନୁହନ୍ତି ତ ?"

"ଦେଖନ୍ତୁ, ନିଜକୁ ନେଇ ଆକାଶରେ ବସାଇ ଦିଅନ୍ତୁ ନାହିଁ—ଖସିପଡ଼ିବେ ।"

"ଖସିପଡ଼ିପାରେ—କିନ୍ତୁ ଆପଣଙ୍କ କୋଂଳରେ ନୁହେଁ ।"

ଖୁବ୍ ଜୋର୍‌ରେ ହସିଲା ରଥ !

"ବୁଝିଲି ପିଲେ, ମୋତେ ସେ ଦିନ ଏତେ ଅପମାନ ଲାଗିଲା, ମନେହେଲା ରଥ ଠାରୁ ଏମିତି ଅପମାନ ଶୁଣି ଯାହା ଚୁପ୍ ରହିଲି—ସେ ବସ୍‌ରୁ ଡେଇଁପଡ଼ି ମରିଯାଇଥିଲେ କଅଣ ଖରାପ ହୋଇ ଯାଉଥିଲା ? କି ଆଶ୍ଚର୍ଯ୍ୟ କଥା ! ମୁଁ ମୋର ଠିଆ ହୋଇଛି—ମୁଁ କିଏ, ଆରେ ବାବା—ତୁମେ କିଏ—ମୋତେ ଡାକିଲ କାହିଁକି ? ଏମିତି ଗୁଡ଼ାଏ ଅପମାନ ଦେଲ କାହିଁକି ? —କେତେ ଲୋକ ଶୁଣିଲେ, କି ଅତ୍ୟାଧୁନିକତା ଏ ! ଭାରି ଚଢ଼ି ଲାଗିଲା ? ଇଚ୍ଛା ହେଲା ଯାହା ପଛେ ହେବ, ଏମିତି ଝିଅ—ମୁହଁକୁ, ଖାଲି କିଛି କଥା ନ କହି, ଓଦା ମାଟିରେ ଜୁଡ଼ୁଜୁଡ଼ୁ ହୋଇଥିବା ଫୁଟବଲ ଫୋପାଡ଼ିବ । ବଜାଡ଼ି ଦୋକା !

"ଗଲାତ , ମୁଁ ମୋର ଯେଉଁଠି ଓହ୍ଲେଇବାର କଥା ଓହ୍ଲାଇଲି । ସେ ବୋଧେ ଆହୁରି ଆଗକୁ ଗଲା ।

"କିନ୍ତୁ ମୋ ମନରେ ପ୍ରତିଶୋଧର ନିଆଁ ଜଳିଉଠିଲା ।

"ତାର ଠିକ୍ ଦିନେ ଦୁଇଦିନ ପରେ । ଇଉନିଭରସିଟିର କନ୍‌ଭୋକେସନ ହେଉଛି । ଭାରତର ଜଣେ ପ୍ରଧାନବ୍ୟକ୍ତି ଆସିଥାନ୍ତି ପ୍ରଧାନ ଅତିଥି ହୋଇ । ମୁଁ ଥାଏ କଲେଜରେ ଜଣେ ଷ୍ଟୋଭର । ଲେଡିଜ ଗେଟ୍‌ର ଭାର ଥାଏ ମୋ ଉପରେ । ସଭିଙ୍କ ଇଚ୍ଛା ତମ୍ବୁ ଭିତରକୁ ଯିବେ । ମାତ୍ର ଟିକେଟ୍ ନ ଦେଖାଇଲେ ଛାଡ଼ୁଛୁ କିଏ ? ଅବଶ୍ୟ ଲେଡ଼ିଜ୍ ଗେଟ୍ ପାଖେ ଏମିତି କିଛି ଭିଡ଼ ନାହିଁ—କି ଧରାବନ୍ଧା ନିୟମ ନାହିଁ । ତଥାପି ବହୁ ତରୁଣୀ, ବୃଦ୍ଧା, ଛାତ୍ରୀ, କଣେଇବା ମୋତେ ଟିକଟ୍ ଧରାଇ ଦେଇ ଭିତରକୁ ପଶିଲେ । ସଭା ଜମିଆସିଲା , ବାହାରର ଲୋକଗହଳି ବି କମିଆସିଲା । ଫାଟକ ପାଖେ ଷ୍ଟୁଲ୍‌ଟା ପକାଇ ମୁଁ ବସି ଖଣ୍ଡେ ସିଗ୍ରେଟ୍ ଟାଣି ଆରାମରେ ଧୂଆଁ ଛାଡ଼ୁଚି । ଭାରି କ୍ଲାନ୍ତ, ବଡ଼ ବିରକ୍ତ ବି ଲାଗିଲାଣି । ଏହି ସମୟରେ ପହଞ୍ଚିଲେ ଶ୍ରୀମତି ରତି ମହାପାତ୍ର । ସାଙ୍ଗରେ ତାଙ୍କର ଆଉ ଗୋଟିଏ ଝିଅ, ସମବୟସ୍କା । ବୋଧେ ମହିଳା କଲେଜର ଛାତ୍ରୀ । ଏ ଜଣକ ବି ଅତ୍ୟାଧୁନିକା, ଆଉ କେଶବିନ୍ୟାସରେ ରତିର ଚେଲି ଶ୍ରେଣୀୟା । ସେହିପରି ହମ୍ ହମ୍ କରି ଆଗଚାଲି ଆସିଲେ । ମୋ ଦେହର ରକ୍ତଗୁଡ଼ା ଫୁଟିଉଠିଲା ଅଭଦ୍ରା ରତିକୁ ଦେଖି ।"

"ନମସ୍କାର, କଣ ଭିତରକୁ ଯିବାକୁ ଛାଡ଼ପତ୍ର ମିଳିବ ?"

ରତିର ମନରେ ଅଗାଧ ଦମ୍ଭ ଯେ ତା'ର ଚଳନ୍ତଚପଳା ଅଙ୍ଗଭଙ୍ଗୀ ଓ ମନଚପଳା କଣ୍ଠସ୍ୱରରେ ଭୁଲି କହିବ ଦେହି ପଦ ପଲ୍ଲବ ମୁଦାରଂ—ଯାଆନ୍ତୁ ଯାଆନ୍ତୁ—ଛାଡ଼ପତ୍ରର କଣ ଦରକାର ? ସଭା ଆରମ୍ଭ ହୋଇଗଲାଣି ।—ମା କୁରୁ ଜାତମ୍ବିନୀ ଗମନ ବିଳମ୍ବନଂ ।

କିନ୍ତୁ ଖୁବ୍ ରୁକ୍ଷ ଭାବରେ ମୁଁ ପ୍ରଶ୍ନ କଲି, "ଆପଣଙ୍କ ଟିକେଟ୍ ଅଛି ତ ?"

"ହଁ ଅଛି ଯେ — ମାତ୍ର ଖଣ୍ଡିଏ । ମୋର ଏଇ ସାଙ୍ଗ ପାଇଁ ଟିକିଏ ଦୟାକରି ଛାଡ଼ିଦେବେ ?"

ମୋ ରକ୍ତ ଗରମ ହୋଇଗଲା—"ଆପଣ ତାହେଲେ କହୁଛନ୍ତି—ମୁଁ ଦୟାକରି ନିୟମ ଲଙ୍ଘନ କରିବି — ନାହିଁ ?"

"ଆପଣ କ'ଣ ନିୟମକୁ ଏମିତି ବାନ୍ଧି ରଖିଛନ୍ତି ।" ରତି ରାଗିଗଲା ।

"ନା—କିନ୍ତୁ ନିୟମ ମୋତେ ବାନ୍ଧିରଖିଛି ।"

"ଆଚ୍ଛା—ଆପଣଙ୍କୁ ନିୟମ ଏହିଭଳି ବନ୍ଧନ କରି ରଖିଥିବା ଅବସ୍ଥାରେ ଆମେ ଦୁହେଁ ଯଦି ବଳାତ୍କାରରେ ସଭାଗୃହରେ ପ୍ରବେଶ କରୁ ? ଆ, ମିଳମା !"

ଦୁହେଁଯାକ ଗେଟ ଭିତରକୁ ମାଡ଼ି ଆଗେଇଗଲେ । ମୁଁ ରାଗରେ ଥରି ଉଠିଲି । କହାଣ୍ଡ ମୁହଁଖୋର୍ । ମୁଁ ହଠାତ୍ ଠିଆ ହୋଇ ଦୁଇହାତ ପ୍ରସାରଣ କରି କହିଲି—

ତାହେଲେ ମୁଁ ବାଧହୋଇ ମୋର ସମସ୍ତ ବଳ ଖର୍ଚ୍ଚକରି ଆପଣମାନଙ୍କୁ ଗେଟରୁ ନିକାଳିଦେବି । ଆପଣମାନେ ଫେରିଯାଆନ୍ତୁ—ନଚେତ୍—"

ମିସ୍ ରିତା ଆଉ ତାର ସାଙ୍ଗ ସ୍ତମ୍ଭିତ ହୋଇ ଛିଡ଼ାହୋଇଗଲେ । ସେମାନଙ୍କ ମୁହଁରୁ ଆଉ ପଦେ କଥା ବାହାରିଲନାହିଁ । ମୋ ମନରେ ଯୁଗପତ୍ ଘୃଣା ଓ ଦୟା ଆସିଲା । ଇସ୍, କେତେ ଦୁର୍ବଳ ଏ ଜୀବଟା ? ରିତାର ଆଖି ଛଳଛଳ । ସେ ଖୁବ୍ ଅପମାନିତ ବୋଧକରୁଥିଲା । ମୋତେ ଟିକେ ଖରାପଲାଗିଲା—ଚିନ୍ତା ବି ଲାଗିଲା, ଦୁନିଆଟାରେ—ଆଚ୍ଛା ଜୀବଟେ ଏ । ତୋଟାକୁ ଯିବୁ ? କହିବେ—ହୁଁ । ଅମ୍ବ ଖାଇବୁ ? କହିବେ—ହୁଁ । ବାଘ ଆସିଲେ ଡରିବୁନି ? ଚଟାପଟ୍ ଉତ୍ତରଦେବେ—ନା—ନା— । ମାତ୍ର ଅଳିକ ଖାଲି ଟିକେ ଫୁଙ୍କିଦେଲେ ପଟ୍‌କିନା ତଳେ ଆଖିପତା ବୁଜିଦେଇ, ଦେହ ଢଳିପଡ଼ିଦେବେ ! ଏ ଜୀବଟା ଉପରେ ମନ ବଡ଼ ତିକ୍ତ ହୋଇଆସିଲା । ପରାଜୟ—ଅପମାନତା—ଆହତା ରିତାକୁ ଚାହିଁଲି । କେତେ ଶ୍ରେଷ୍ଠ ସେ ମନେହେଲା ମତେ ସେ କ୍ଷଣ ! ହସ ବି ଲାଗିଲା । ହୁଁ, ଏତେଟିକେ ମଣିଷ, ଏତେଟିକେ ବେଣୀ, ଏମିତି ଖଣ୍ଡେ ଶାଢ଼ି, ଏଇ ଗୋଟେ ମୁହଁ, ଏଇ ଟିକେ ଛାତି ଧରି ଏ ବସିଛି ବିଶ୍ୱ ବିଜୟ କରିବ । ହାଃ ହାଃ ହାଃ —ହୋପ୍‌ଲେସ୍ !

"ରିତା ତାର ଟିକେଟଟାକୁ ମୋ ପାଖରେ ରାଗରେ ଫିଙ୍ଗିପକାଇ ଟମ୍ ଟମ୍ ହୋଇ ସଖୀସହ ପ୍ରସ୍ଥାନ କଲା ।"

"ଏଇ ନିଅନ୍ତୁ ଆପଣଙ୍କର ନିଦ୍ଦେଶ ।" ଚାଲିଗଲା ରିତା—ତଳକୁ ମୁହଁ ପୋତି ପୋତି, ଆଖିରୁ ଲୁହ ଢାଳି ଢାଳି ପରାଜିତା ରିତା ଚାଲିଗଲା ।

"କିନ୍ତୁ ପିଲେ—ମୋ ମନଟା ଦବିଆସିଲା । ଆଃ, କାହିଁକି ଝିଅଟାକୁ ଏମିତି କହିଲି । ଠିକ୍ ତ ଥିଲା ଜାଗା । ବିଶ୍ୱାସର ନିଜ ଉପରେ କେତେ ଦମ୍ଭ ଥିଲା । ଫାଟକରେ ଯେ ଥାଉ—ଶ୍ରୀମତୀ ରିତା ମହାପାତ୍ରଙ୍କୁ ଆଗରେ ଦେଖିଲେ କୃତକୃତ୍ୟ ହୋଇ ପଥ ଛାଡ଼ି ଦେବ—ପରିଚୟପତ୍ରର ବି ଦରକାର ପଡ଼ିବନାହିଁ ।

"ମୋର କିଛି ଦୁଃଖ ନାହିଁ—ଚୁଟ୍‌କିଲି ପିଲେ—ନିଜର ଦୁଃଖକୁ ମୁଁ ସେମିତି କିଛି ବଡ଼ ବୋଲି ଧରେନା । କିନ୍ତୁ ଏଇ ଅନ୍ୟର ଦୁଃଖ—ଅନ୍ୟର ଅପମାନ—ଅନ୍ୟର ବେଦନା—ଅନ୍ୟର ନିରୁପାୟ ଦୁର୍ବଳତା । —ଏଇଗୁଡ଼ାକ ମୋର ଛାତିକି ନିତ୍ୟ ମନ୍ଥନ କରନ୍ତି ।"

"କିନ୍ତୁ ସାର୍—ରିତା କଣ ଯେ ଚାଲିଗଲା, ଆଉ ଜମା ଫେରିଲା ନାହିଁ ? ନାହିଁ ସାର୍, ରିତାକୁ ଫେରାନ୍ତୁ—ଆଉ ଥରେ ତାକୁ ଆପଣଙ୍କ ସାଙ୍ଗେ ଭେଟାଇଦିଅନ୍ତୁ । ଗୋଟାଏ ଜ୍ୟୋତ୍ସ୍ନା ନିଶୀଥରେ—ଧରନ୍ତୁ କଲେଜ ପଢ଼ିଆରେ—ନଇଲେ କେନାଲ କୂଳରେ, ନଇଲେ ହିନ୍ଦ୍ ସିନେମାର ବକ୍‌ସ ଭିତରେ—କିଛି ନହେଲେ କଟକ ହୋଟେଲ ବା ଇଷ୍ଟର୍ଣ୍ଣ ହୋଟେଲ୍‌ରେ ।

"ନା, ସାର୍ ନା—ଆମେ ଆପଣଙ୍କୁ ଜମା ଛାଡ଼ିବୁ ନାହିଁ ।" ସମସ୍ତ ତରୁଣମଣ୍ଡଳୀ ଚିତ୍କାର କରିଉଠିଲେ ।

ଟୋକାଗୁଡ଼ାଙ୍କ ଉପରେ ଦେହ ଚିଡ଼ିଲା । ହଃ, ନଈ ନ ଦେଖୁଣୁ ଲଙ୍ଗଳା ! ଖେଚଡ଼ଗୁଡ଼ାକ ଖାଲି ମିଳନ ପାଇଁ ଯାହା ହେଉଛନ୍ତି । ହଉ ହଉ—ବାପଧନ, ଅପେକ୍ଷା କର । କେତେ ମିଳନ କରିବ ଜ୍ୟୋତ୍ସ୍ନା ଜଣୀଥରେ ଦେଖିବା—ରହ । ଦୀର୍ଘନିଃଶ୍ୱାସ ଛାଡ଼ିଲି । ଏଭଳି ବୃଷ୍ଟିମୁଖର ଶ୍ରାବଣରେ—ତପନହୀନ ଘନ ତମସାବୃତ ଝରଝର ବାଦଲ ଭିତରେ ଘରେ ମୋର ନବବଧୂକୁ ଛାଡ଼ି ଆସିଚି । ଆହା—ଆହା—"ଏମ୍ନି ଦିନେ ତାରେ ବଲାଯାଏ—ଏମ୍ନି ଘନ ଘୋର ବରଷାଏ—"

ସେଇ ପ୍ରୌଢ଼ ବକ୍ତାଟି ପୁଣି ଆରମ୍ଭ କଲେ—"ହଁ—ଶୁଣ ଶୁଣ । ସେଦିନ ତ ଗଲା—ମୋ ମନଟା ବି ଦିନଯାକ ଖରାପ ହେଲା । କାହିଁକି ଗୋଟେ ଏମିତି କହିଲି । କେଉଁ ନିୟମରେ ଏବେ ଦୁନିଆଁ ଚାଲୁଛି । ସେ ଦିନ ରାତିରେ ମୁଁ ଶୋଇ ବି ପାରିଲି ନାହିଁ । ପାଞ୍ଚ ଛଅ ଦିନ ବିତିଗଲା ।

ରତିକୁ କଲେଜରେ ଦେଖେ, ତାକୁ ଚାହେଁ । କିନ୍ତୁ କି କରୁଣ ତାର ସେ ମୁହଁଟି । ଆଉ ଆଗପରି, ସେ ଉଦ୍ଦାମ ଉଚ୍ଛୃଙ୍ଖଳତା ନାହିଁ । ଦବି ଯାଇଛି । ଏକା ଏକା ଯାଉଚି, ଏକୁଟିଆ ଆସୁଛି, କାହା ସଙ୍ଗେ କଥା ନାହିଁ । ମୋ ମନ ବଡ଼ ଛଟପଟ ହେଲା । ରତିର ଏ ରୂପ ପ୍ରକୃତରେ ମୋର ବଡ଼ ଅସହ୍ୟ ହୋଇଉଠିଲା । ମୋର ମନେ ହେଲା, ଶିବ କର୍ତ୍ତୃକ ମଦନ ଭସ୍ମ ପରେ—ପତି ବା ବଳପିତା ବଧୂନିତା ଏ ରତି ! କିମ୍ବା ନିଜ ସମ୍ମୁଖରେ ପିନାକୀନ୍ କର୍ତ୍ତୃକ—ମନୋଭବର ଦହନ ଦେଖି ଭଗ୍ନ ମନୋରଥ ସତୀ ପାର୍ବତୀ, "ପ୍ରିୟେଷୁ ସୌଭାଗ୍ୟ ଫଳାହି ଚାରୁତା"—ଏହି କଥା ଭାବି ନିଜର ରୂପ, ନିଜର ତନିମାକୁ ପ୍ରତି ମୁହୂର୍ତ୍ତରେ ଶ୍ରୀମତୀ ରତି ମହାପାତ୍ର ରୂପରେ ସହସ୍ରବାର ଧିକ୍କାର କରୁଚି । ମୋର ଦୟା ହେଲା । ମୋର ପୌରୁଷ ଅଭିମାନ ମିଳାଇଗଲା । ରତି—ରତି—ଆଃ, କି ଅନ୍ୟାୟ କରିଛି ମୁଁ ତା' ପ୍ରତି । ମୋ ଉପରେ ଦୃଷ୍ଟି ପଡ଼ିଲେ ତାର କରୁଣ ଆହତ ଓ ଭୀତ ଦୃଷ୍ଟି-ପାତକୁ ସେ ବଡ଼ ନିରୀହ ଭାବରେ ଫେରାଇନିଏ ।

ଦିନ ରାତି କେବଳ ମୁଁ ସେହି କଥାକୁ ଭାବିବାକୁ ଲାଗିଲି । ଆକାଶ, ପବନ, ପଥ, ଘାଟ, ଦୋକାନ, ବଜାର, ଖେଳପ୍ରାନ୍ତର, କଲେଜ, ଲାଇବ୍ରେରି ସବୁଠାରେ ମୋତେ ଦେଖାଗଲା ଦୁର୍ବିନୀତା ରତି ମହାପାତ୍ରର ସେଇ ପରାଜିତ ମ୍ଳାନ ମୁଖମଣ୍ଡଳ ! ପ୍ରତି ମୁହୂର୍ତ୍ତରେ ମୋ ହୃଦୟରେ ଗୁମୁରି ଉଠିଲା ବିଶ୍ୱକବିଙ୍କର ମଦନ ଭସ୍ମ ପରେ—ସନ୍ନ୍ୟାସୀ ଶିବଙ୍କୁ ପ୍ରଶ୍ନ—ହେ ସନ୍ୟାସି ! ପଞ୍ଚଶରକୁ ଦଗ୍ଧ କରି ତୁମେ ଏକି କଲ ? "ପଞ୍ଚଶରେ ଦଗ୍ଧ କରେ କରେଛ ଏକି ସନ୍ୟାସୀ ! ବିଶ୍ୱମୟ ଦିଏଛ ତାରେ ଛଡ଼ାଏ ।" ତାର ବ୍ୟାକୁଳ ବେଦନା ଯେ—ହେ ନିର୍ମମ ସନ୍ନ୍ୟାସୀ; ଆକାଶରେ ବତାସରେ ନିଃଶ୍ୱସିତ ହୋଇ ଉଠୁଛି ।

ଝରଝର ପଡ଼ୁଛି ବାଦଲ ଭିତରୁ ତାର ବେଦନାଶ୍ରୁ—। ଆଉ ରାଧାର ବୈଧବ୍ୟ—ବିଳାପ ସଙ୍ଗୀତରେ ନିଖିଳ ଭୁବନ ଭରି ଉଠିଛି—ସକଳ ଦିଗ ଆର୍ତ୍ତିସ୍ୱରରେ କାନ୍ଦିଉଠୁଛି ସ୍ମାମୀ ସ୍ମାମୀ—ହେ ନିର୍ମମ, ହେ ନିଷ୍ଠୁର—ହେ ସନ୍ନ୍ୟାସୀ, ପଞ୍ଚାଶରଙ୍କୁ ଦଗ୍ଧ କରି ତୁମେ ଏକି କଲ ? ଏକି କଲ ?

"ମୁଁ ପାଗଳ ହୋଇଗଲି । ସଦ୍ୟକଥିତା ରାଧା ମୋର ମସ୍ତିଷ୍କକୁ ନାଇଣ ବିଚଳିତ କଲା । କିନ୍ତୁ କଣ ହେଲା ଜାଣିଛ ?"

"କଣ ହେଲା ?" ସମସ୍ତ ତରୁଣ ହୃଦୟ ଆଶା ଓ ଆଶଙ୍କାରେ ବିକ୍ଷୁବ୍ଧ—ମନ୍ଥିତ ।

"ଦିନେ—ବହୁଦିନ ପରେ—ମାନେ ମାସେଖଣ୍ଡେ ପରେ ମୋର ଖଣ୍ଡେ ନାଟକର ଅଭିନୟ ହେବାର ସ୍ଥିର ହୋଇଥାଏ । ଅଭିନୟ ହେବ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ । ମୋର ନାଟକରେ ମୁଁ ହେବ ହିରୋ । ତେଣୁ ବିଜ୍ଞାପନ ଦେଇଥାଏ—ଯେଉଁମାନେ ଅନ୍ୟ ସବୁ ଭୂମିକାରେ ଅଭିନୟ କରିବାକୁ ଇଚ୍ଛା କରନ୍ତି—ମୋତେ ଗୋଟେ ନିର୍ଦ୍ଦିଷ୍ଟ ସମୟରେ ଦେଖାକରନ୍ତୁ । ବୈତରଣୀ ବନ୍ୟାରେ କ୍ଷତିଗ୍ରସ୍ତ ଦରିଦ୍ର ଗ୍ରାମବାସୀଙ୍କୁ ସାହାଯ୍ୟ କରିବା ପାଇଁ ଆମେ କେତେଜଣ ଏ ଉଦ୍ୟମ କରିଥିଲୁ । କେତେ ଲୋକ ଆସିଥିଲେ । ଟ୍ରାଏଲ ସରିଲା । ରିହର୍‌ସାଲ ବି ଆରମ୍ଭ ହୋଇଗଲା ।

ମାତ୍ର ଶୁଣିବ ? ଅସମ୍ଭବ କଥା, ଦିନେ ସକାଳେ—ସାତଟା ହେବ—ଉତ୍କଳ ଯୁବନାଟ୍ୟ ସଂଘ ଅଫିସରେ ବସି ମୁଁ ଖବରକାଗଜ ପଢ଼ୁଛି । ଆଉ ଘଣ୍ଟାକ ପରେ ସମସ୍ତେ ଆସିଲେ ରିହର୍‌ସାଲ ଆରମ୍ଭ ହେବ, ହଠାତ୍ ସେ ପ୍ରବେଶ କଲା—ସେ—ଶ୍ରୀମତୀ ରାଧା ମହାପାତ୍ର । ମୁଁ ଆଶ୍ଚର୍ଯ୍ୟ ହେଲି । ନମସ୍କାର ଆଦାନ ପ୍ରଦାନାନ୍ତେ ମୁଁ ତାଙ୍କୁ ଚଉକି ଦେଇ ପଚାରିଲି—"କୁହନ୍ତୁ, ମୁଁ ଯଦି ଆପଣଙ୍କୁ କିଛି ସାହାଯ୍ୟ କରିପାରେ !"

"ନା, ଆପଣଙ୍କ ସାହାଯ୍ୟ ମାଗିବାକୁ ମୁଁ ଆସିନି, ବନ୍ୟାପୀଡ଼ିତ ଦରିଦ୍ର ଓଡ଼ିଆ-ଭାଇଙ୍କୁ ସାହାଯ୍ୟ କରିବା ପାଇଁ ମୁଁ ଧାଇଁଆସିଛି ।"

"ଓ, ତେବେ ଆପଣ ଚାନ୍ଦା ଦେବେ ? କେତେ ଟଙ୍କାର ଟିକେଟ୍ ଆଜ୍ଞା ? ପ୍ରଥମ ରଜନୀ ପାଇଁ ତ ?"

"ନା—ମୁଁ ଟିକେଟ୍ କିଣିବ ନାହିଁ, ଅଭିନୟ କରିବ ।"

"ସତେ ? ତେବେ କେଉଁ ପାର୍ଟରେ ଆପଣ ଟ୍ରାଏଲ୍ ଦେବେ ?"

"ଆପଣଙ୍କ ନାଟକରେ ହିରୋଇନ୍ ହେବାକୁ ମୋର ଇଚ୍ଛା ।"

ରାଧାର ମୁହଁ ରଙ୍ଗା ପଡ଼ିଆସୁଥିଲା । ମୁଁ ଆନନ୍ଦାତିଶଯ୍ୟରେ ବିହ୍ୱଳ ହୋଇପଡ଼ିଲି । କିନ୍ତୁ ରାଧାର ଏ ଆବେଦନ ମୁଁ ଠିକ୍ ବୁଝି—ଠିକ୍ ଧରିପାରିଲି ! ରାଧା ଆଉ ଯାହାହେଉ ପଛେ ନାରୀ—ମୁଁ ଆଉ ଯାହା କିଛି ହୁଏ ପଛେ ପୁରୁଷ ।

ଆପଣ ଠିକ୍ ସ୍ଥିର କରିଛନ୍ତି ମୋ ନାଟକରେ କେବଳ ହିରୋଇନ୍ ହେବେ ?''

''ହଁ, କାହିଁକି ? ଆପଣ କଣ ହିରୋଇନ୍ ବାଛି ସାରିଲେଣି ?''

ରତିର ଆଖିରେ ଦୃଢ଼ତା; କିନ୍ତୁ ଦୃଷ୍ଟି ତାର ବଡ଼ କୋମଳ ।

''ମୁଁ ବଡ଼ ଦୁଃଖିତ ଶ୍ରୀମତୀ ମହାପାତ୍ର ! ମୋ ନାଟକର ହିରୋଇନ୍ ବଛାସରିଲାଣି । ମାତ୍ର ମୋ ଜୀବନରେ ହିରୋଇନ୍ ସ୍ଥାନ ଖାଲିଅଛି । ଆପଣ କେଉଁ ହିରୋଇନ୍ ହେବାକୁ ବେଶି ପସନ୍ଦ କରିବେ—ମୋ ନାଟକର, ନା ମୋ ଜୀବନର ?''

ଏତିକ କହିଦେଇ ମୁଁ କିନ୍ତୁ ବଡ଼ ଅପ୍ରତିଭ ହୋଇଉଠିଲି । ଏସବୁ ବ୍ୟାପାରରେ ମୁଁ କେତେ ଗମ୍ଭୀର ! କେତେ ସଂଯତ !! କିନ୍ତୁ ଜୀବନରେ ଏମିତି ଥରେ ଥରେ ବିଶୃଙ୍ଖଳ ବେଳା ଆସି ପହଞ୍ଚିଯାଏ ରେ ପିଲେ ! ଭିତରେ ଆଉ ବାଡ଼ବତା ରହେନ । ମୁଁ ହୁଏତ ବ୍ୟବହାରରେ ଅନ୍ୟାୟ କଲି ; ମାତ୍ର ମୁଁ ଯାହା କରିଛି ସେଇଟା ପୁରାପୁରି ଠିକ୍ । ସେ ଦିନର ସେଇ ଘଟଣାଟି ପରେ—ମୋ ପାଖରେ ରତି ଭଲ ହୋଇ ଆଉ ଅଭିନୟ କରିପାରି-ନଥାନ୍ତା । ସେ ଜୀବନ ଖୋଜୁଥିଲା—ନାଟକ ନୁହେଁ । ହଁ, ମୁଁ ଜାଣି ପାରୁଥିଲି—ମୁଁ ଠିକ୍ ଜାଣି ପାରୁଥିଲି ଯେ—ମୁଁ ରତି ବିଷୟରେ ଯାହା ଜାଣି ପାରୁଥିଲି, ତାହା ପୁରାପୁରି ଠିକ୍ । ଆଉ ମୁଁ ତ ସହଜେ ଅଭିନେତା । ଅଭିନୟ ଛଡ଼ା ସତ୍ୟ, ମୋ ନିକଟରେ ସଂପୂର୍ଣ୍ଣ ମିଥ୍ୟା । କେତେ ଅଭିନୟର ପ୍ରେମିକ ସାଜି, ମୁଁ କେତେ ପ୍ରେମିକା ପାଇଁ କେତେ ଥର ଯେ କେତେ ଅଶ୍ରୁ ବିସର୍ଜନ କରିଛି, ତାର ଇୟତ୍ତା ନାହିଁ । ମାତ୍ର ବାସ୍ତବ ଜୀବନରେ ମୋ ଆଖିର ଅଶ୍ରୁ ଦେଖିଚି ବୋଲି କହିବ ଏମିତି ସେ କିଏ, ଯାହାର ଭିତରେ ହାଡ଼ ଅଛି ? ମୁଁ ନାଟକରେ ହୁଏତ ଉତ୍କୃଷ୍ଟ ନାୟକ, ମାନେ ଧୀରୋଦାତ୍ତ ବା ଧୀରଲଳିତ ବା ଧୀରପ୍ରଶାନ୍ତ ଯାହା କହ ତାକୁ । ମାତ୍ର ଜୀବନରେ ? ବାସ୍ତବ ହିରୋ ହବା ମୋ ପ୍ରଲୋଭନ ଓ ଉଦ୍ୟମର ବାହାରେ । ଚତୁରୀ ରତି ବୋଧେ ଏଇଟା ଠିକ୍ ଧରିଥିଲି । ତେଣୁ ମୁଁ ଯେତେବେଳେ ତାକୁ ପ୍ରଶ୍ନ କଲି, ତୁମେ କେଉଁ ନାୟିକାର ପାର୍ଟକୁ ପସନ୍ଦ କରିବ—ମୋ ଜୀବନର, ନା ମୋ ନାଟକର ? ସେ ବି ଠିକ୍ ଉତ୍ତର ଦେଲା—''କିନ୍ତୁ ଆପଣଙ୍କ ଜୀବନର ହିରୋ ସାଜି ଆସିବ ତ ?''

''ଆପଣ କଣ ଭାବୁଛନ୍ତି ?''

''ନା—ଆପଣଙ୍କର ଜୀବନ ନାହିଁ, ଆପଣ ବାସ୍ତବରେ ହିରୋ ହୋଇପାରିବେ ନାହିଁ ।''

''କିନ୍ତୁ ମୁଁ ବି ଜାଣେ ଶ୍ରୀମତୀ ମହାପାତ୍ର, ଆପଣଙ୍କୁ ନାଟକରେ ହିରୋଇନ୍ ହୋଇ ଆସିବ ନାହିଁ । ଆପଣ ନାୟିକା ହିସାବରେ ମୋ ନିକଟରେ ଏତେ ବାସ୍ତବ ଯେ, ଭ୍ରୁଡ଼ନ୍ତୁ, ଆପଣଙ୍କ ଦେହାତ ରଙ୍ଗମଞ୍ଚରେ ଅଭିନୟ ହୋଇପାରିବନି । ଆପଣ ଅଟରେ ଗୃହମଞ୍ଚରେ ଅବତୀର୍ଣ୍ଣ ହୁଅନ୍ତୁ ।''

ଏତକ କହି ମୁଁ ହାତଯୋଡ଼ି ବିଦାୟ ନମସ୍କାର ଜଣାଇଲି । ସେ ପ୍ରତିନମସ୍କାର ଜଣାଇ ଗମ୍ଭୀର ହୋଇ ଯେ ଚାଲିଗଲେ ବାସ୍ ସେଇଦିନୁ ମୁଁ ଆଉ ତାଙ୍କୁ ଦେଖିନାହିଁ ଆଜିକୁ ପାଞ୍ଚ-ଛଅ ବର୍ଷ ହୋଇଗଲା ।

"ସରିଲା ? ଶୁଣିଲ ? ଓହୋ—"ପ୍ରୌଢ଼ ବ୍ୟକ୍ତିଟି ହାତରେ ମୁହଁ ପୋଛୁ ସିଗ୍ରେଟ ଧରିଲେ ।

"ନା ସାର୍, ନା ସାର୍—ଏଭଳି ଗୋଟେ ଏପିକାଲ୍ ଟ୍ରାଜେଡ଼ିରୁ ଆମକୁ ରକ୍ଷା କରନ୍ତୁ । ରତିକୁ ଅନ୍ତତଃ ଆଉଥରେ ଆଣନ୍ତୁ । ନା ସାର୍, ନା ସାର୍—କଥାଟାକୁ ନ ହେଲେ ଅନ୍ତତଃ କଳ୍ପନାରେ ବି ବଢ଼େଇ ଦିଅନ୍ତୁ । କହନ୍ତୁ ସାର୍, କହନ୍ତୁ ।" କଳ୍ପନା-ବିଳାସୀ ପଢ଼ୁଆଙ୍କ ତରୁଣଦଳ ଚିତ୍କାର କରିଉଠିଲେ ।

"ତା'ହେଲେ ଆଉ କେମିତି ବଢ଼େଇବି କୁହ ? ରତି ସାଙ୍ଗେ ମୋର ଅଉ କେମିତି ବା ଦେଖା ହେବ ?"

ହଠାତ୍ ଜଣେ ଲମ୍ବାକଲରଖା ଟୋକା ତା ହାଓ୍ୱାଇନ୍ ଟାରେ ବୋତାମ ଲଗାଉ ଲଗାଉ କହିଲା, "ଏଇ ଧରନ୍ତୁ ସାର୍, ଅନେକ ଦିନ ବିତିଗଲା—କେତେ ଦିନ କେତେ ମାସ—କେତେ ବର୍ଷ—ଗ୍ରୀଷ୍ମ ବର୍ଷା ଶରତ ହେମନ୍ତ ଶୀତ ବସନ୍ତ । ପୃଥିବୀରେ ବହୁ ପରିବର୍ତ୍ତନ ହୋଇଯାଇଛି । ଏହିଭଳି ଏକ ବୃଷ୍ଟିମୁଖର ଶ୍ରାବଣର ଅପରାହ୍ନ । ଆପଣ ଆପଣଙ୍କର ପ୍ରିୟତମା ସ୍ତ୍ରୀଙ୍କର ଜରୁରୀ ଚିଠି ପାଇ ଠିକ୍ ଆଜିପରି ସ୍ଥାନାନ୍ତରିତ ହେଉଛନ୍ତି । ହଠାତ୍ ଅଧବାଟରେ ଟ୍ରେନ ମଧ୍ୟରେ ଏକା କାମରାରେ ରତିଦେବୀଙ୍କ ସଙ୍ଗେ ଆପଣଙ୍କର ଭେଟ ହୋଇଯାଏ ।"

"ଇଏସ୍, ଇଏସ୍—ଡ୍ରାମାଟିକ୍—ରୋମାଣ୍ଟିକ୍—କହନ୍ତୁ, କହନ୍ତୁ ସାର୍—ତାପରେ କ'ଣ ହେବ ?"—ବଜାରୀ ଟୋକାଗୁଡ଼ାଙ୍କର ପାଟିରେ ଟ୍ରେନ ଶବ୍ଦ ବି ଆଉ ଶୁଭିଲା ନାହିଁ ।

ଭଦ୍ରଲୋକ ହସି ହସି ମୁଣ୍ଡ ହଲାଇ କହିଲେ—"ନା—ନା ଆଉ କଣ ହେବ ? ରତି ହୁଏତ କୌଣସି ପ୍ରୌଢ଼ ଅଧ୍ୟାପକଙ୍କୁ ବିବାହ କରି, ଜାୟା ଓ ଜନନୀ ହୋଇସାରି ତାର ସୁଖୀ ପରିବାରକୁ ନେଇ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ବାହାରିଥିବ । ମୁଁ ଆଉ କାହିଁକି ତା ସଙ୍ଗେ ଭେଟ ହୋଇ ତା'ର ଶାନ୍ତ ମନକୁ ଅଶାନ୍ତ କରିବି ? ତା'ର ବିଶୁଦ୍ଧ ସୁଖୀ ପରିବାର ମନରେ ଶ୍ମଶାନର ଅତୀତର ଚିତାଧୂମ ପୂରାଇ ଧୂମାୟିତ କରିବାକୁ ମୁଁ ଆଉ କାହିଁକି ବା ଚେଷ୍ଟାକରିବି ?

ଏତିକବେଳେ ଆଶ୍ଚର୍ଯ୍ୟ କଥା—କୋଣରେ ବସିଥିବା ତରୁଣୀଟି ଖବରକାଗଜଟାକୁ ମୋଡ଼ିମାଡ଼ି ଧରି ସେଇ ତରୁଣମଣ୍ଡଳୀ ନିକଟକୁ ଆସି କହିଲେ—"ନମସ୍କାର ଧୀରେନ୍ ବାବୁ, ଚିହ୍ନି ପାରୁଛନ୍ତି ? ମୁଁ ରତି ମହାପାତ୍ର ! ଚିହ୍ନିପାରୁ ନାହାନ୍ତି, ଏଁ ? କିନ୍ତୁ ଆପଣଙ୍କ

ଗଳ୍ପର ଶେଷାଂଶର ମନ୍ତବ୍ୟଟା କହାଯାଇ ଭୁଲ । ମୁଁ ଆଜି ପର୍ଯ୍ୟନ୍ତ ବାହାହୋଇନାହିଁ । ଏମ୍. ଏ. ଆର୍ଟ ଭାଇଜନରେ ପାସ୍ କରି ମୁଁ ଉତ୍କଳ ଗ୍ରୁପ୍ଥିଏଟର କମ୍ପାନୀରେ ଅଭିନୟ କରୁଚି । ଏଥର ଚିହ୍ନି ପାରିଲେ ତ ? ସିପ୍ରା—ସିପ୍ରା—ମିସ୍—ସିପ୍ରା—କେତେଥର ମୋର ଚିତ୍ର ଦେଖିଥିବେ, ଚିହ୍ନିପାରୁ ନାହାନ୍ତି ?"

ମୁଁ ଆଖିର ଚଷମାକୁ ଭଲକରି ପୋଛି ଦେଖିଲି । ଆରେ ହଁତେ ତ, ମିସ୍ ସିପ୍ରା ! ଏ— ଉତ୍କଳର ସୁପ୍ରସିଦ୍ଧ ଲୋକପ୍ରିୟ ଚିତ୍ରତାରକା । ଆରେ ସ୍କାଲ୍ଡ, ମୁଁ ଚିହ୍ନିପାରୁନଥିଲି ଏ ପର୍ଯ୍ୟନ୍ତ ! ଇସ୍, ଏ ସିନେମା ଷ୍ଟାରଗୁଡ଼ାକ କେତେ ମେକପ୍ କରନ୍ତି ହେ ?

ସମସ୍ତ ତରୁଣମଣ୍ଡଳୀ ହତଭମ୍ବ ହୋଇ ଛୁଡ଼ାହୋଇରହିଲେ । ପ୍ରୌଢ଼ ଭଦ୍ରବ୍ୟକ୍ତିଟି କ'ଣ କହିବାକୁ ଯାଉଥିଲେ । ମାତ୍ର ତରୁଣୀଟି ଫେର୍ କହିଲେ—ହଁ, ଆପଣ ମୋତେ ସେ ଦିନ କହିଥିଲେ ଯେ, ମୁଁ ଅଭିନୟରେ ହିରୋଇନ୍ ହୋଇପାରିବନି । ବର୍ତ୍ତମାନ ଦେଖୁଛନ୍ତି ତ ? ହାଃ ହାଃ ହାଃ କଣ ଯେ ଆପଣମାନେ କହନ୍ତି ?"

ଭଦ୍ରବ୍ୟକ୍ତିଟି ତାଙ୍କର କରମର୍ଦ୍ଦନ କରି କହିଲେ, "କିନ୍ତୁ ଆପଣ ବି କହିଥିଲେ ନା —ମୁଁ ଜୀବନରେ ବାସ୍ତବ ନାୟକ ହୋଇପାରିବନି । କିନ୍ତୁ ଏବେ ମୁଁ ମୋ ସ୍ତ୍ରୀଙ୍କଠାରୁ ଜରୁରୀ ଚିଠି ପାଇ ତାଙ୍କ ପାଖକୁ ଯାଉଛି—ବର୍ତ୍ତମାନ ଶ୍ରୀମତୀ ରିତା ମହାପାତ୍ର ଓରଫ୍ ମିସ୍ ସିପ୍ରା ସ୍ୱୟଂ ମୋର ହାତଧରି ଟାଣିଲେ ବି ମୋତେ ଆଉ ଜୀବନରୁ ନାଟକକୁ ନେଇଯିବା ସମ୍ଭବପର ନୁହେଁ—ହାଃ-ହାଃ-ହାଃ ।"

ଦୁହେଁଯାକ ହସିଉଠିଲେ—ପ୍ରୌଢ଼ ବ୍ୟକ୍ତିଟି ଓ ଗ୍ଲେଟ ପିଲଟି ଆମ ପାଖକୁ ଆସି- ଯାଇଥିଲେ । ମିସ୍ ସିପ୍ରା ଚିହ୍ନାଇଦେଲେ । "ଅଉ ଦେଖନ୍ତୁ ଧୀରେନ୍ ବାବୁ, ଏ ହେଉଛନ୍ତି ଆମ କମ୍ପାନୀ 'ଉତ୍କଳ ଗ୍ରୁପ୍ଥିଏଟର'ର ଜଣେ ଶ୍ରେଷ୍ଠ ଶିଳ୍ପୀ । ଭଲ ଭିଲେନ୍ ପାର୍ଟ କରନ୍ତି । ଆଉ ଏ ପିଲଟି ବି ଗୋଟିଏ କୁନି ଆକ୍ଟର । ଆମକୁ ଏଇ ଢେଙ୍କାନାଳ ଷ୍ଟେସନରେ ଓହ୍ଲାଇବାକୁ ପଡ଼ିବ; କାରଣ ସେଠି ଆମକୁ ଗୋଟେ ସୁଟିଂ ନେବାକୁ ହେବ । ଆମର ଡିରେକ୍ଟର ଓ ଅନ୍ୟାନ୍ୟ ଶିଳ୍ପୀଗଣ ଅନ୍ୟ କାମରାରେ ଅଛନ୍ତି । ଆ—ବାଇ—ବାଇ— ଟା—ଟା—ଟା—ଟା......

"ଚଅର ଇଉ ସିପ୍ରା—ଚଅର ଇଉ !"—ଭଦ୍ରଲୋକ ରୁମାଲ ଟେକିଲେ । ଗାଡ଼ି ଢେଙ୍କାନାଳ ଷ୍ଟେସନରେ ପହଞ୍ଚିସାରିଥିଲା । ସେମାନେ ସବୁ ଓହ୍ଲାଇଗଲେ । ତରୁଣ- ମଣ୍ଡଳୀଯୁକ୍ତ ସେଇ ବିଚିତ୍ର ଭଦ୍ରବ୍ୟକ୍ତି—ସେମାନେ ବି ସେଇଠି ଓହ୍ଲାଇଲେ ।

ମୁଁ ଏକା ରହିଗଲି । ମନେ ମନେ ଖୁବ ବିରକ୍ତ ଲାଗିଲା । କି କଦର୍ଯ୍ୟ ଦୃଶ୍ୟ । ଗପଟା ଶୁଣିବାକୁ ଅବଶ୍ୟ ଭଲ ଲାଗୁଥିଲା; ମାତ୍ର ଏ ଦୃଶ୍ୟ ! ଇସ୍—କି କାଳ ହେଲା ? ଯୁଆଡ଼େ ଦେଖିବ ଖାଲି ଏଇଆ । କଅଣ—ଏ ଯୁଗରେ ବିଶ୍ୱାସ କରିବ ହେ ? ଦୁନିଆରେ ସତ ଆଉ କଅଣ ? ସବୁତ ସିନେମା । ଏମିତି ନାଟକୀୟ ଘଟଣା ବାବା—ସାହିତ୍ୟରେ

ଏମ୍. ଏ. ପାସ୍ କରି ପୁଣି ଲାଇବ୍ରେରିଆନ ହୋଇ ବି କେଉଁଠି ପଡ଼ିଛି । କି ଆକସ୍ମିକ—ଅସମ୍ଭବ—ଛବିର ନାଟକୀୟ ପରିଣତି ? କିନ୍ତୁ ଏ ସମୁଦାୟଟା ପୁଣି ଗୋଟେ ସୁଟିଂ ନୁହଁ ତ ? କିଛି ବୁଝି ନପାରି ମୋର ଅନୁଭୂତିହୀନ—ଘଟଣାବିହୀନ ଜୀବନଟା ଖାଲି ଛଟପଟ ହେଲା ।

କିନ୍ତୁ ମିସ୍ ସିପ୍ରା ଉପରେ ମୋର ରାଗ ରହିଗଲା ବେଶି । ସେ ମୋ ଖବରକାଗଜଟି ମାଗିନେଲେ—ଆଉ ଫେରାଇନାହାନ୍ତି । କିନ୍ତୁ ଆଉ କଣ ଏ ସୁଯୋଗ ଆସିବ ? ଟ୍ରେନ୍‌ଟା ଶବ୍ଦ କରି ଚାଲିଥାଏ—ଟଙ୍କା ଟଙ୍କା ଭଉଁରି ଟଙ୍କା ଟଙ୍କା ଭଉଁରି ।

□□□

# କାମଧେନୁମାର୍କା ଗୋ-ଖାଦ୍ୟ ପ୍ରସଙ୍ଗ

ଖଗେଶ୍ୱରବାବୁ ସ୍ତ୍ରୀଙ୍କୁ ନିଧାର୍ଯ୍ୟ ପ୍ରତିଶ୍ରୁତି ଦେଲେ ସଖୀ ! ପ୍ରାଣେଶ୍ୱରି ! ତୁମକୁ ନେହୁର୍ ହେଉଛି ଆଉ ଲେଟଣୀ ପାର୍ଟିଏ ପରି ବକମ୍ ବକମ୍ ହୁଅନାହିଁ । ଅବଶ୍ୟ ତୁମ କଣ୍ଠସ୍ୱରଟି ଆଜି ପର୍ଯ୍ୟନ୍ତ ବି ମୋର ହୃଦୟରେ ବେସୁର୍ ରାଗିଣୀ ସୃଷ୍ଟି କରୁଛି । ଆଉ ମୁଁ ଏହା ମଧ୍ୟ ନିଶ୍ଚିନ୍ତ ଭାବେ ଜାଣେ ଯେ ତୁମେ ତୁମ ନିଜ ସ୍ୱାର୍ଥ ଲାଗି ବା ତୁମ ବାପଘରର ସ୍ୱାର୍ଥଲାଗି ମୋ ସଙ୍ଗେ ବକମ୍ ବକମ୍ ହେଉନାହଁ । ମୋ ଲାଗି ଓ ମୋର ପିଲାମାନଙ୍କ ସ୍ୱାସ୍ଥ୍ୟ ଲାଗି ତୁମେ ଏତେ ଚିନ୍ତିତ ଓ ବିବ୍ରତ । ମୁଁ ଦୁଧ ଖାଇବି ବୋଲି ଓ ମୋର ପିଲାମାନେ ଏ ଲକ୍ଷ୍ମୀଛଡ଼ା ଯୁଗରେ ଦୁଧ, ଦହି, ଘିଅ ଟିକେ ମୁହଁରେ ମାରିବେ ବୋଲି ତୁମେ ଏତେ ଶ୍ରମ କରୁଛ । ମୋର ଆଉ ପୂର୍ବ ଅଭିଯୋଗ ନାହିଁ । ତୁମେ ତୁମ ଗହଣା ଷ୍ଟେଟ୍‌ବ୍ୟାଙ୍କ୍‌ରେ ବନ୍ଧାରଖି ଗାଈଟିଏ କିଣିଛ—ଘରେ ଚାକର ବାକର ବ୍ୟତୀତ ମଧ୍ୟ ତୁମେ ମୋର ହାଣ୍ଡିଶାଳଠାରୁ ପାଇଖାନା ଓ ମୋ ଶୋଇବା ଘରଠାରୁ ଗୁହାଳଯାଏ ସବୁ ପାଇଟି ତୁଲାଉଛ । ତୁମର ଏଇ ସୁନ୍ଦର ମଥାଟି ଛୁଇଁ ମୁଁ ପ୍ରତିଜ୍ଞା କରୁଛି କି ଆଜି ତୁମର ଏହି କାମଧେନୁର ଅଲିଅଳୀ ନନ୍ଦିନୀ ସୁରଭି ଧେନୁଟି ଲାଗି ମୁଁ ନିଶ୍ଚୟ ଉତ୍କୃଷ୍ଟ ଗୋଖାଦ୍ୟ କିଣିଆଣିବି । ଆଉ ଆମକୁ ଏଣୁତେଣୁ କୁଣ୍ଡା, କୁଳୁଚ, ଗୋଲ୍‌କଡ଼, ବାଦାମ ପିଡ଼ିଆ ବି ସଂଗ୍ରହ କରିବାକୁ କଟେଶରଠୁଁ ମାଲଗୋଦାମ, ନୂଆବଜାରଠୁଁ ବକ୍‌ସିବଜାର ଯାଏ ସାଇକେଲ ଧରି ଧାଇଁବାକୁ ପଡ଼ିବନାହିଁ । ନୂତନ ଗୋ-ମହିଷାଦି ଯୋଜନା ବିଭାଗ ତରଫରୁ ଉତ୍କୃଷ୍ଟ ଗୋଖାଦ୍ୟ ବିକ୍ରି ହେଉଛି । ସେଥିରେ ସବୁ ରାସାୟନିକ ଉପାୟରେ ଖାଦ୍ୟପୁଷ୍ଟିମାନ ରହିଛି । ଭିଟାମିନ, ପ୍ରୋଟିନ୍ ସବୁକିଛି ବୈଜ୍ଞାନିକ ଉପାୟରେ ସୂକ୍ଷ୍ମ ଭାବେ ପ୍ରସ୍ତୁତ ହୋଇଛି । ଗୋଟିଏ ବସ୍ତା ମାସକୁ ଦରକାର । କୁଣ୍ଡେ ପାଣିରେ ୨ କିଲୋ ଓଜନର ଖାଦ୍ୟ ମିଶାଇ ଦୁଇଥର ପିଆଇଦେଲେ ସୁରଭି ତୁମର ଦିନକୁ ଚାରିଲିଟର୍ ଦୁଧରୁ କମ୍ ଦେବନାହିଁ । ଚାଲିଲି, ମୁଁ ଚାଲିଲି । ଦିଅ ମତେ ଟଙ୍କା ପଚାଶଟା—ଆଉ କପେ ଚାହା ବି ଦିଅ, ଚାରିଖଣ୍ଡ ପାନ ମଧ୍ୟ ଦିଅ ।

ସ୍ତ୍ରୀ ସୁଭାଷିଣୀଙ୍କ ମୁହଁ ଚନ୍ଦ୍ରଉଦୟ ଭଳି ଉଜଳିଉଠିଲା । ସେ ଚା’ କପ୍ ସ୍ୱାମୀଙ୍କ ହାତକୁ ବଢ଼ାଇଦେଇ କହିଲେ—ସତେ ! ତାହେଲେ ଆଉ ଭାବନା କଣ ? ପାନ ଚାରି ଖଣ୍ଡ ଦଉଛି । ଯାହା ହେଉ—ଏତେ ଦିନକେ ତୁମ ମୁଣ୍ଡକୁ ଗାଈ ଚିନ୍ତା ପଶିଲା । ମୁଁ ମରି ଯାଉଥାଏଁ ଟି । ଏମିତି ଗୁଣର ମରଦ ଯଦି ଟିକିଏ ଆଗରୁ ହୋଇଥାନ୍ତ !

ଖଗେଶ୍ୱରବାବୁ ଏ ବୟସରେ ବି ପତ୍ନୀଙ୍କ ଗାଲରେ ହାତମାରି ଗେଲ୍‌କରନ୍ତି । ସେ ତାଙ୍କର ଗାଲକୁ ଚିପିଦେଇ କହିଲେ—ଆହା ମୋର ପାଗଲି ବେଲ ! ମରିଯିବା କଥା ଆଉ ତୁଣ୍ଡରେ ଧରିବ ନାହିଁ । ମୁଁ ମରିଗଲେ—ମୋର ସବୁତ ପ୍ରୋଭିଡ଼େଣ୍ଟ ଫଣ୍ଡ, ଜୀବନବୀମା ଆଦି ତୁମର ଲଭ ହେବ । ମାତ୍ର ତୁମେ ମରିଗଲେ ମୋର ଜୀବନଧନ—ପାଣିବିନା ମାଛଭଳି ମୁଁ ପାଟି ଫାକୁ ଫାକୁ କରି ମରିବି ସିନା । ଦେଖ ସଖି ! ଏତେଦିନକେ ମୋ ମୁଣ୍ଡକୁ ଗାଈ ଚନ୍ଦ୍ରା ପଶିଲି ବୋଲି ଯାହା କହିଲ—ସେ କଥା ମିଛ—ବରଂ ସତ କହିଲେ ଏତେଦିନେ ମୋ ମୁଣ୍ଡକୁ ତୁମ ଚନ୍ଦ୍ରା ପଶିଲି । ତେବେ ଜମା ନ ହେବା ଠାରୁ ବିଳମ୍ବରେ ହେବା ଭଲ !

ସୁଭାଷିଣୀ ଦେବୀ ଟିକିଏ ଗେହ୍ଲେଇହୋଇ କହିଲେ—ସେକଥା ମିଛ । ମୋ ଚନ୍ଦ୍ରା ତୁମ ମୁଣ୍ଡରେ କେବେ ପଶିନାହିଁ କି ପଶିବ ନାହିଁ । ସେଥିରୁ ବା ମତେ କ'ଣ ମିଳିବ ? ଏମିତି ଏମିତି ତ ଏତେକାଳ ଗଲିଣି । ଆଉ କେତେଦିନ କି ?

ଖଗେଶ୍ୱରବାବୁ ଏଣିକି ତେଣିକି ଚାହିଁ ସ୍ତ୍ରୀଙ୍କୁ ଟିକିଏ ଆଲିଙ୍ଗନ କରି କହିଲେ—ହୃଦୟେଶ୍ୱରି ! ସତ କହି ତ ! କିଏ କାହା ପଛରେ ଗୋଡ଼ାଉଥାଏ—ମୁଁ ତୁମର ନା ତୁମେ ମୋର ? ମୁଁ ତ ଘରେ ଥିବା ବେଳଯାକ ତୁମ ପଛେ ପଛେ ଗୋଡ଼ାଉଥାଏ । ଆଉ ତୁମେ ମାତିଥାଅ ତୁମ ଗ୍ୟାସଚୁଲି, ତୁମ କୋଇଲି ଚୁଲି, ତୁମ ସର୍ଫଭିଜା ବାଲ୍‌ଟି, ତୁମ ପନିକି, ତୁମ ଚକି ଆଉ ତୁମ ଗାଈ ବାଛୁରୀ କୁକୁଡ଼ାଙ୍କ ପିଛାରେ । ଆଉ ମୋ ଉପରେ ଖେଙ୍କୁଥାଅ । ହଉ ହଉ ପାନ ଗୁଆଖଣ୍ଡେ ଜଲଦି ଦିଅ, ମୋତେ କଲିପଡ଼ିଆ ଯାଏ ପୁଣି ଯିବାକୁ ହେବ । ସରକାରୀ ସହଯୋଗରେ ଯେଉଁ ଗୋ-ଖାଦ୍ୟ କଥା କହୁଛୁ, ତାହା ମିଳୁଛି କଲିପଡ଼ିଆରେ । ଦିଅ ଜଲଦି ! ଆଜି ଅଫିସ୍‌ରୁ ଚଂଚଳ ଆସିଛି ସେଇଥିଲାଗି । କାରଣ ଗୋ-ଖାଦ୍ୟ ଅଫିସ ବେଳା ମଧ୍ୟ ଆମ ଅଫିସ୍ ବେଳା ଭଳି । ନିର୍ଦ୍ଧାରିତ ସମୟର ବହୁପରେ ଆସିବା ଓ ନିର୍ଦ୍ଧାରିତ ସମୟର ବହୁ ପୂର୍ବରୁ ଅଫିସରୁ ପଳାଇଯିବା···ହେଁ-ହେଁ-ହେଁ ।

ପାନ ଧରି, ସ୍ତ୍ରୀଙ୍କୁ ଆଉ ଟିକିଏ ଗେଲ କରି, କଲେଜପଢ଼ୁଆ ବଡ଼ପୁଅକୁ ଧରି ଖଗେଶ୍ୱରବାବୁ ରେକସାରେ ବସି କଲିପଡ଼ିଆ ଅଭିମୁଖେ ଗଲେ । ବୈଜ୍ଞାନିକ ପ୍ରଣାଳୀରେ ପ୍ରସ୍ତୁତ ବସ୍ତାଏ ଗୋ-ଖାଦ୍ୟ ସେ ଆଜି ଆଣିବେ—ଯେପରି ହେଉ ଆଣିବେ ।

ଭୁବନେଶ୍ୱର ଓ କଟକର ଏକ ଜନଗହଳି ଆଖିଦୃଶିଆ ସ୍ଥାନରେ ସେ ଗୋଟାଏ ବିରାଟ ସାଇନ୍‌ବୋର୍ଡ଼ ଦେଖିଥିଲେ । ସେଥିରେ ଅତ୍ୟନ୍ତ ସୁନ୍ଦରୀ ଜଣେ ମହିଳା ଖୁବ୍ ଗୋଟାଏ ଚମତ୍କାର ବୃନ୍ଦାବନୀ ଗାଈକୁ ଖାଦ୍ୟ ଖୁଆଉଛି ଏବଂ ତା'ର ସ୍ୱାମୀ ହେବ ବୋଧେ ଜଣେ ଲୋକ ସେହି ଗାଈଠାରୁ ବାଲଟିଏ ଦୁଧ ଦୁହୁଁଛି । ପାଖରେ ଦୁଇଟି ଅତି ସୁନ୍ଦର ସ୍ୱାସ୍ଥ୍ୟ ଓ ରୂପର ପୁଅଝିଅ ଠିଆହୋଇ କାଚଗ୍ଲାସରେ ଦୁଧ ପିଇଲାଗିଛନ୍ତି । ଚିତ୍ର ତଳେ ବଡ଼ ବଡ଼ ଅକ୍ଷରରେ ଲେଖାଯାଇଛି—"ଆଜି ଏହି କାମଧେନୁମାର୍କା ଗୋ-ଖାଦ୍ୟ କିଣି

ଆପଣଙ୍କ ଗାଈକୁ ଖୁଆନ୍ତୁ । ଏହା ବୈଜ୍ଞାନିକ ପ୍ରଣାଳୀରେ ଓ ସରକାରୀ ସହଯୋଗରେ ପ୍ରସ୍ତୁତ । ଦାମ୍ ଅତି ଶସ୍ତା । ଆପଣଙ୍କ ଗାଈ ଚାରିଗୁଣ ଦୁଧ ଦେବ ।

ତା'ତଳେ ଲେଖାଯାଇଛି—ସେଇ ଅମୂଲ୍ୟ ଗୋ-ଖାଦ୍ୟ ମିଳିବାର ଠିକଣା—

ସ୍ଥାନ—କଲ୍ପତରୁଆ

କଟକ

ଗୋ-ଖାଦ୍ୟ ଦୁର୍ଲଭ ହୋଇଛି । ସ୍ତ୍ରୀ ଏକଥା ଜାଣିଥିଲେ ବି ପ୍ରତିଦିନ ଗୋ-ଖାଦ୍ୟ ଲାଗି ଖଗେଶ୍ୱରବାବୁ ତାଙ୍କଠାରୁ ଗାଳିଖାଉଥିଲେ । ଆଜି ଆଉ ଚିନ୍ତା ନାହିଁ । ଅଠରଟା ଉପାଦାନ ଖୋଜିବୁଲିବାର କ୍ଳାନ୍ତିଦାୟକ ଶ୍ରମ ନାହିଁ । ଗୋଟିଏ ବସ୍ତା କାମଧେନୁ ଗୋ-ଖାଦ୍ୟ କିଣିଆଣି ନିର୍ଶ୍ଚିନ୍ତ ଭାବେ ଗାଈକୁ ଖୁଆଇବେ । ଗାଈ ଚାରିଗୁଣ ଦୁଧ ଦେବ । ସେତିକ ପତ୍ନୀ ଓ ପିଲାଙ୍କୁ ଖୁଆଇବେ । ଆଉ ସେ ନିଜେ ସ୍ତ୍ରୀ ଠାରୁ ଗାଳି ଖାଇବେନାହିଁ । ତା' ବଦଳରେ ଦହି, ରାବଡ଼ି ଖାଇବେ । ବରଂ ଏଣିକି ସେ ସ୍ତ୍ରୀଙ୍କ ସଙ୍ଗେ ସାହିତ୍ୟ, ସଙ୍ଗୀତ ଓ କଳା ଆଦି ବିଷୟରେ କଥାବାର୍ତ୍ତା ହେବେ । ପ୍ରେମତତ୍ତ୍ୱ ଉପରେ ଆଲୋଚନା କରିବେ ଓ ଥଟ୍ଟା ତାମସା ଲଗାଇ ଏହି ଦୁର୍ଘଟ ଦୁଃସହ କାଳକୁ ପାରହୋଇଯିବେ । ଖଗେଶ୍ୱରବାବୁ ମହା ଉତ୍ସାହରେ ରିକ୍ସାବାଲାକୁ କହିଲେ—ଟିକିଏ ଚଞ୍ଚଳ ଚଞ୍ଚଳ ପାଇଡାଲ ମାର୍ ଭାଇ !

ରିକ୍ସା ଜୋର୍‌ରେ ଚାଲିଥାଏ । କଲେଜପଢ଼ୁଆ ପୁଅ କହିଲା—ବାପା ! ଦୁଇଟା ବସ୍ତା ନେଇ ଆସିଲେ ଭଲହୁଅନ୍ତା । ଖଗେଶ୍ୱରବାବୁ କହିଲେ—ପ୍ରଥମଥର ବସ୍ତାଏ ନେଇ ପରୀକ୍ଷା କରାଯାଉ—ତେଣିକି ଦୁଇବସ୍ତା କାହିଁକି ଚାରିବସ୍ତା ବି ନେଇଯିବା ।

ସହରର ଏ ପ୍ରାନ୍ତରୁ କଲ୍ପତରୁଆଯାଏ ଯିବାକୁ ପୁରା ଏକଘଣ୍ଟା ଲାଗିଲା । ମାତ୍ର ଏତ କଲ୍ପତରୁଆ—ଏହାର ଆରମ୍ଭ କୋଉଠୁ ଶେଷ କେଉଁଠି ଜାଣିବା ମୁସ୍କିଲ । ଏଠି କାମଧେନୁ ଗୋ-ଖାଦ୍ୟ ଅଫିସ କୋଉଠି, ଏବେ କେମିତି ଜାଣିବା ? ଟିକିଏ ଭାବି ସେ ରେକ୍ସାବାଲାକୁ ସାବକ ଜିଲ୍ଲା ଅଥାତ୍ ବାରବାଟୀ ଜିଲ୍ଲା ଭିତରକୁ ଯିବାକୁ ନିର୍ଦ୍ଦେଶ ଦେଲେ; ମାତ୍ର ତାର ଚତୁର୍ଦ୍ଦିଗରେ ବୁଲି ବୁଲି ସେମାନେ କାମଧେନୁମାର୍କା ଅଫିସଟିକୁ ପାଇଲେ ନାହିଁ । ସେଠି ଜଣେ ବତାଇଦେଲେ—ଆପଣମାନେ ଷ୍ଟାଡ଼ିୟମ ଭିତରକୁ ଯା'ନ୍ତୁ ତା' ଭିତରେ ପାଇଲେ ପାଇପାରନ୍ତି ।

ବାପ ପୁଅ ଦୁହେଁ ଷ୍ଟାଡ଼ିୟମ୍ ଭିତରେ ପଶି ଦେଖିଲେ, ତା ମଧ୍ୟରେ ବହୁ ସଂସ୍ଥାର ଅଫିସ ଅଛି । ମାତ୍ର କାମଧେନୁ ଗୋ-ଖାଦ୍ୟ ସଂସ୍ଥା ସମ୍ବନ୍ଧେ ସମସ୍ତେ ସଂଶୟ ପ୍ରକାଶ କଲେ । ଜଣେ କହିଲେ—ଆଜ୍ଞା କାମଧେନୁ ଶବ୍ଦଟି କଳ୍ପବୃକ୍ଷ ଓ ଚିନ୍ତାମଣି ଶବ୍ଦ ଭଳି ଅଳୀକ ଅଟେ । ଗୋ-ଖାଦ୍ୟଭଳି ବାସ୍ତବ ବସ୍ତୁ ସଙ୍ଗେ ମିଶିଲେ ବି ସେ ଶବ୍ଦଟିର ଅଳୀକତା ଅପ୍ରମାଣିତ ହେଉନାହିଁ । ଆପଣଙ୍କୁ ଯଦି କିଏ କହେ କିନ୍ନରର ବୀଣା କମ୍ବା ଅପ୍ସରାଙ୍କ

ଶାଢ଼ି ଅମୁକ ବଜାରରେ ମିଳୁଛି, ସେଥିପାଇଁ କଣ ଆପଣ ସହରଯାକ ବାଣ୍ଡ ଓ ଶାଢ଼ି ଖୋଜିବେ ?

ଖଗେଶ୍ୱରବାବୁ ସାହିତ୍ୟକ ଆଲୋଚନା ଲାଗି ପ୍ରସ୍ତୁତ ନଥିଲେ । ସେ ରେକ୍‌ସାକୁ ଷ୍ଟାଣ୍ଡ଼ଯ୍ୟମ୍ ବାହାରକୁ ଯିବାକୁ ନର୍ଦ୍ଦେଶଦେଲେ । ସେଇଠୁ ବାପପୁଅ ରିକ୍‌ସାରେ କଲ-ପଡ଼ିଆରେ ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ ସବୁଆଡ଼େ ବୁଲି ସଫ୍ଟ୍ରାଟିର କୂଳକିନାରା ପାଇଲେ-ନାହିଁ । ତାପରେ ସେମାନେ ଗୋଟିଏ ଛକଜାଗାରେ ଠିଆହୋଇ ଏଣିକି ତେଣିକି ଚାହିଁଲେ । ପୁଅ କହିଲା—ବାପା ! ଆପଣ ଏଇ ରେକ୍‌ସାରେ ଥାନ୍ତୁ—ମୁଁ ଏଇ ଦୋକାନରେ ପଚାରିଆସେ ।

"ଏଠାରେ ମାଂସ ପରଟା ମିଳେ',—ଲେଖାଥିବା ଗୋଟିଏ ଦୋକାନରେ ପହଞ୍ଚି ପୁଅ ଜଣକୁ ପଚାରିଲା—ହଇଓ ବାବୁ, ଏଠାରେ ଗୋ-ଖାଦ୍ୟ କୋଉଠି ମିଳେ କି ?

ହୋଟେଲରେ ଥିବା ଲୋକଟି ଅଜଣା ଶବ୍ଦଟିର ଅର୍ଥ ପଚାରିଲା—ଗୋ-ଖାଦ୍ୟ କଣ ?

କଲେଜପଢ଼ୁଆ ପୁଅଟି କିଞ୍ଚିତ ରୁଷ୍ଟହୋଇ କହିଲା—ଗୋ-ଖାଦ୍ୟ କଣ ଜାଣିନ ? ଗୋ ହେଲା ଗୋରୁ—ଖାଦ୍ୟ ମାନେ ଖାଇବା ବିଷୟ ବା ପଦାର୍ଥ ।

ଲୋକଟି ଏତକ ଶୁଣିଶୁଣି ଆଉ ଅଧିକ ବୁଝିବାକୁ ଆଗ୍ରହୀ ନ ହୋଇ—ହାତ ଲମ୍ବାଇ ଦେଖାଇଦେଲା—ହେଇ ଏଇ ଗଳି ଭିତରେ ଯାଅ—ଗୋରୁ ଖାଇବା ବିଷୟ ସେଇଆଡ଼େ ପଡ଼ିବ ।

ଅନନ୍ତର ଖଗେଶ୍ୱରବାବୁଙ୍କ ରେକ୍‌ସା ଯୋଉଠି ଅଟକିଲା—ତାର୍ କିଛିବାଟ ଆଗରୁ ବାପପୁଅ ଦୁହେଁ ଏକ ବିକଟ ଦୁର୍ଗନ୍ଧକୁ ସହ୍ୟ କରିନପାରି ମୁହଁରେ ରୁମାଲ ମାଡ଼ି ବସିଥିଲେ । ସେମାନେ ଦେଖିଲେ—ବହୁ କୁକୁର, କୁଆ, ଚିଲ ଓ ଶାଗୁଣାଙ୍କ ମେଳା ବସିଛି ଏବଂ ତା ଭିତରେ ବଡ଼ ହତାଟିଏ ଥାଇ ତା ମଧ୍ୟରେ ତିଣ ଛପର ଖୋଲା ଘରଟିଏ । ଘରଟି ହେଉଛି ସହରର ବସବାସ ଅଞ୍ଚଳ ଠାରୁ ଦୂରରେ ଥିବା ଗୋମାଂସ ବିକ୍ରୟର କେନ୍ଦ୍ର । ମାନେ କଂସାଇଖାନା । କେତୋଟି ଗୋରୁଙ୍କର ମୃତଦେହ ମଧ୍ୟ ବାହାରକୁ ଦୃଶ୍ୟ ହେଉଥିଲା । ଖଗେଶ୍ୱରବାବୁ ଏହି ବିଭତ୍ସ ଦୃଶ୍ୟରେ ଅତ୍ୟନ୍ତ ବିହ୍ୱଳ ହୋଇ ଗୋବିନ୍ଦ ଗୋବିନ୍ଦ ନାମ ବାରଂବାର ଉଚ୍ଚାରଣ କଲେ ଓ ମନେ ମନେ ଏହି ସ୍ଥାନ ଦର୍ଶନକୁ ମନ୍ଦଭାଗ୍ୟର ପରିଣତି ବୋଲି ଭାବି ବଡ଼ ସନ୍ତପ୍ତ ହେଲେ । ଏଣେ ରିକ୍‌ସା-ବାଲା ମଧ୍ୟ ବହୁତ ବୁଲି ବୁଲି ଥକ୍‌କା ହୋଇଗଲାଣି । ସେ ତାର ଭଡ଼ା ମାଗିବସିଲା । ଖଗେଶ୍ୱରବାବୁ ଭାବିଲେ—ଧ୍ୟାଃପ । ଭୁବନେଶ୍ୱର ଠାରୁ କଟକ ଯାଏ ଏଡ଼େ ଏଡ଼େ ସାଇନ୍‌ବୋର୍ଡ଼ ମାରିଛ । ଅଥଚ ଠିକଣା ଦେଇଛ—କଲପଡ଼ିଆ । କଲପଡ଼ିଆରେ ଏ ଅଫିସ ଖୋଜିବା ଯାହା—ମହାନଦୀ ପାଣିରୁ ହଜିଗଲା ମୁଦି ଖୋଜିବା ସେଇଆ ।

ରେକ୍‌ସାକୁ ବିଦାୟ ଦେଇ ବାପ ପୁଅ ଦୁହେଁ ଚାଲି ଚାଲି ଏଣେତେଣେ ବହୁତ ଖୋଜିଲେ । ବହୁତ ପଚରାଉଚରା କଲେ । ଶେଷରେ ଜଣେ କହିଲା—ହେଇଟି; ଆପଣ

ସେଇ ନାଲକୋଠା ପାଖକୁ ଯା'ନ୍ତୁ । ସେଠି ଗାଈର ଗୋଟିଏ ଛବି ଦିଶୁଛି । ବୋଧେ ସେଇଟା ହୋଇଥିବ ।

ସେଠାରେ ପହଞ୍ଚି ସେମାନେ ଦେଖିଲେ—ଏହା ଭିତରକୁ ଯିବା କୋଉବାଟେ ? ଘର ଚାରିପାଖେ ପାଚେରି ନାହିଁ କି ଫାଟକ ନାହିଁ । ଅଥଚ ଘରଟାର ପ୍ରଧାନ ବାରଣ୍ଡାଟା ମଧ୍ୟ ରାସ୍ତା ଆଡ଼କୁ ଦୃଶ୍ୟମାନ ହେଉନାହିଁ । ଶେଷରେ ସେମାନେ ଗୋଟିଏ ଝରକା ବାଟେ ସେହି କୋଠରିଟିର ଭିତରକୁ ଚାହିଁ ଉଠିଲେ । ଅଫିସ ନିସ୍ତବ୍ଧ । ଟେବୁଲ ଚଉକି ଫାଇଲପତ୍ର ଠିକ୍ ରହିଛି; ମାତ୍ର ଏ କଣ ? ତା' ଭିତରେ ଜଣେ ମୁଣ୍ଡ ଉପରେ ଠିଆହୋଇ ଶୀର୍ଷାସନ କରୁଛି ଓ ଅନ୍ୟମାନେ ମତ୍ସ୍ୟାସନ ଓ କୂର୍ମାସନ କରିବାରେ ନିୟୋଜିତ । ଜଣେ ଆଧୁନିକ ଯୋଗୀପୁରୁଷ ସେଠାରେ ଆସନ କରିବାର ନିର୍ଦ୍ଦେଶ ଦେବାରେ ବ୍ୟସ୍ତ ଅଛନ୍ତି । ପ୍ରଥମେ କିଛି ବୁଝିନପାରି ଖଗେଶ୍ୱରବାବୁ ସେ ଘରର ସାଇନ୍‌ବୋର୍ଡ଼ ଆଡ଼କୁ ଚାହିଁଲେ । ସେ ଘର ଚାରିପଟେ ବହୁ ସାଇନ୍‌ବୋର୍ଡ଼ ଟଙ୍ଗା ହୋଇଥିଲା । ସେଥିରୁ ବୁଝାଗଲା—ସେହି ବିରାଟ ଘରେ ବହୁ ପ୍ରକାର ସରକାରୀ ଓ ବେସରକାରୀ ଅଫିସ କାର୍ଯ୍ୟ କରୁଛି; ଯଥା— ନିଖିଳ ନଗର ଯୋଗାସନ ଶିକ୍ଷା ଅଫିସ, ନିଖିଳ ଉତ୍କଳ ମୃତ୍ତିକା ସ୍ଥାପତ୍ୟ ଅଫିସ, ମଙ୍ଗଳବାରିଆ ସାହିତ୍ୟ ସଂସଦ ଅଫିସ, ହାସ୍ୟରସିକ ସଂଘ ଅଫିସ, ପାରିବାରିକ କଳିଆ ମେଣ୍ଟାଣ ଅଫିସ, ବିଶିଷ୍ଟ ବ୍ୟକ୍ତି ସମ୍ବର୍ଦ୍ଧନାସଂଘ ଅଫିସ, ଦେବଦେବୀ ପୂଜକ ସମିତି ଅଫିସ, ନିଖିଳ ନଗର କେଶ, ନଖ ଓ ଶ୍ମଶ୍ରୁ ବର୍ଦ୍ଧନୀସଂଘ ଅଫିସ ଇତ୍ୟାଦି ଇତ୍ୟାଦି ।

ଖଗେଶ୍ୱରବାବୁ ଏହି ସହର ମଧ୍ୟରେ ସରକାରୀ ସ୍ଥାନ ବିରାଟ ହର୍ମ୍ୟରେ ଏତେଗୁଡ଼ିଏ ଅଫିସ ଚାଲୁଥିବା ଦେଖି ଆଶ୍ଚର୍ଯ୍ୟ ହେଉ ହେଉ ପୁଅକୁ ପଚାରିଲେ—ଆରେ ବାବୁ, ସେଇ ଗାଈ ଚିତ୍ରଥିବା ସାଇନ୍‌ବୋର୍ଡ଼ଟା ଯାହା ଆମକୁ ସେତେ ଦୂରରୁ କଂସାଇଖାନା ପାଖରୁ ଦିଶୁଥିଲା ସେଇଟା କାହିଁ ?

ପୁଅ କହିଲା—ବାପା, ହେଇଟି ସେଇ ସାଇନ୍‌ବୋର୍ଡ଼ଟା; ମାତ୍ର ତା' ସଙ୍ଗେ ଏହି କୋଠାଟିର କୌଣସି ସମ୍ପର୍କ ନାହିଁ ।

ବାପପୁଅ ଦୁହେଁ—ସେଇ ଗାଈ ଚିତ୍ରଥିବା ସାଇନ୍‌ବୋର୍ଡ଼ଟିକୁ ଠାବ କରି ଦେଖିଲେ —ତାର ତଳେ ଲେଖାହୋଇଛି—ପ୍ରସିଦ୍ଧ ଧର୍ମନିରପେକ୍ଷ ଗୋ-ଶାଳା—ଏଠାରେ ସର୍ବନିମ୍ନ ଦରରେ ଖାଣ୍ଟି ଦୁଗ୍ଧ ଯୋଗାଇଦିଆଯାଏ । ପରୀକ୍ଷା ପ୍ରାର୍ଥନୀୟ ।

ତା'ପରେ ତା' ତଳକୁ ତୀରଚିହ୍ନ ସହ ସେହି ଗୋ-ଶାଳାଟିର ଅବସ୍ଥିତି ଜଣାଇ ଦିଆଯାଇଛି । ପୁଅ କହିଲା—ବାପା, ଏହି ତୀରଚିହ୍ନ ଦକ୍ଷିଣ-ପୂର୍ବକୋଣ ଆଡ଼େ ମୁହାଁଇ ଯାଇଥିବା ଏହି ଗଳିଟାକୁ ହିଁ ନିର୍ଦ୍ଦେଶିତ କରୁଅଛି । ଏହି ଗଳିଟି ଏହି ଅଟ୍ଟାଳିକାମାନଙ୍କ ପଙ୍କ ପୁଷ୍କରିଣୀ ନର୍ଦ୍ଦମାଟି ସଙ୍ଗେ ସମାନ୍ତର ଭାବେ ପଡ଼ିଛି । ଏହି ନର୍ଦ୍ଦମା କଡ଼େ କଡ଼େ ଯାଇ ଆମେ ସେହି ଧର୍ମ ନିରପେକ୍ଷ ଆଦର୍ଶ ଗୋ-ଶାଳାରେ ପହଞ୍ଚିବା । ସେଇଠି କାମଧେନୁ-ମାର୍କା ଆଦର୍ଶ ଗୋ-ଖାଦ୍ୟର ସନ୍ଧାନ ମିଳିପାରେ ।

ପ୍ରକୃତରେ କିଛିବାଟ ଗଲାପରେ ପଡ଼ିଲା ସେହି ଗୋ-ଶାଳା । ବିରାଟ ଏକ ହତା । ହତା ଭିତରେ ବହୁ ଗୋବରଗଦା—ଛଣଗଦା ଅଛି । ମାତ୍ର ଏଠି ଗୋରୁ କାହାନ୍ତି ? ତେବେ କେତୋଟି ବାଛୁରି ଏଣେ ତେଣେ ବୁଲୁଥିବାର ସେମାନେ ଲକ୍ଷ୍ୟ କଲେ । ପିତା ପୁତ୍ର ଫାଟକ ପାଖେ କିଛି ସମୟ ଠିଆହୋଇ ଅପେକ୍ଷା କଲେ । ମନରେ ଏକପ୍ରକାର ବିଶ୍ୱାସ ଆସିଯାଇଛି ଯେ, ଏଠାରେ ନିଶ୍ଚୟ ସେହି ଗୋ-ଖାଦ୍ୟର ଠିକଣା ମିଳିଯିବ । ମାତ୍ର କେହି ମଣିଷ ତ ଏଠାରେ ଦିଶୁନାହାନ୍ତି । ହଠାତ୍ ସେମାନେ ଦେଖିଲେ ଧୂସର ବର୍ଣ୍ଣର ଜଣେ ବେଶ୍ ଡେଙ୍ଗା ଲୋକ ତାଙ୍କ ଆଡ଼କୁ ଆସୁଛନ୍ତି । ଲୋକଟିର ଚେହେରା ଦୁର୍ବଳ । ଆଖି ଦୁଇଟିର ଚାହାଣି ଖୁବ୍ ତୀବ୍ର ଏବଂ ସମସ୍ତଙ୍କ ଅବିଶ୍ୱାସ ଓ ତାଚ୍ଛଲ୍ୟ କଲା ଭଳି । ତାକୁ ଦେଖି ଖଗେଶ୍ୱରବାବୁ ଭାବିଲେ—ଏ ନିଶ୍ଚୟ ଆମ ଦୁହିଁଙ୍କୁ ଅପମାନ କରିବେ । ମାତ୍ର କାହାର ଅପମାନରେ ପ୍ରତିକ୍ରିୟାଶୀଳ ନ ହେବାର ଏ ସ୍ଥଳରେ ତାଙ୍କର ସାଧନା ହେବ । ଆଗନ୍ତୁକଙ୍କୁ ବିନୀତ ନମସ୍କାର କରି ପଚାରିଲେ—ଆଜ୍ଞା ! କାମଧେନୁମାର୍କା ବିଶୁଦ୍ଧ ପୁଷ୍ଟିସାର ଗୋ-ଖାଦ୍ୟ ଅଫିସଟା କେଉଁଆଡ଼ରେ ? କେଉଁ ସ୍ଥାନରେ ?

ଗୋ-ଶାଳାଗତ ଭଦ୍ରବ୍ୟକ୍ତି କିଛି ନଶୁଣିଲା ଭଳି ସମଗ୍ର ବ୍ୟାପାରଟିକୁ ଅକିଂଚିତ୍କର ବୋଲି ଭାବି ଖଗେଶ୍ୱରବାବୁ ଓ ତାଙ୍କ ପୁତ୍ରଙ୍କ ଆଡ଼କୁ ଖୁବ୍ ତୀକ୍ଷ୍ଣଭାବେ ଚାହିଁଲାଗିଲେ । ତା'ପରେ ଗମ୍ଭୀର କଣ୍ଠରେ ପଚାରିଲେ—ତୁମେ ଦୁହେଁ କଣ ପିତା ପୁତ୍ର ?

ଖଗେଶ୍ୱରବାବୁ ସାହସର ସହିତ କହିଲେ—ଆଜ୍ଞା ! ଏଥିରେ ଆଉ ସନ୍ଦେହ କରିବାର କଣ ଥାଇପାରେ ?

ଭଦ୍ରବ୍ୟକ୍ତିର ଗମ୍ଭୀର ମୁଖମଣ୍ଡଳରେ ସାମାନ୍ୟ ତାଚ୍ଛଲ୍ୟବ୍ୟଞ୍ଜକ ହାସ୍ୟ ଫୁଟିଉଠିଲା । ତାହା ଆହୁରି ଦୁଃସହ ମନେହେବା କଥା । ତା'ପରେ ସେ କହିଲେ—ସବୁକଥାରେ ଏମିତି ନିଃସନ୍ଦେହ ବିଶ୍ୱାସ ବୁଦ୍ଧି-ବୃତ୍ତିହୀନ ଗୋରୁମାନେ ମଧ୍ୟ କରନ୍ତି ନାହିଁ । ମନୁଷ୍ୟ ପକ୍ଷରେ ତ ଏତେଦୂର ନିଃସନ୍ଦେହ ହେବା ଖୁବ୍ ବେଶି ବିବେକ-ବୁଦ୍ଧିର ପରିଚୟ ଦିଏନାହିଁ ।

ଖଗେଶ୍ୱରବାବୁଙ୍କର କ୍ଳାନ୍ତ ବିରକ୍ତ ମନ ଏହି ଅପ୍ରାସଙ୍ଗିକ ଓ ଅଭଦ୍ରଜନୋଚିତ ଆଳାପରେ କିଞ୍ଚିତ୍ ଚଞ୍ଚଳ ହୋଇଉଠିଲା । ମାତ୍ର ସେ ନିଜକୁ ଯଥାସମ୍ଭବ ସଂଯତ କରି କହିଲେ—ଆଜ୍ଞା ! ଆମ ଦୁହିଁଙ୍କ ମୁହଁରେ ଏକ ସାମଞ୍ଜସ୍ୟ ଲକ୍ଷ୍ୟକରିପାରୁନାହାନ୍ତି ? ଆପଣଙ୍କର ଦୃଷ୍ଟିଶକ୍ତି ଠିକ୍ ଅଛି ତ ?

ଗୋ-ଶାଳାଗତ ଭଦ୍ରବ୍ୟକ୍ତି କହିଲେ—ସାମଞ୍ଜସ୍ୟ ବଡ଼କଥା ନୁହେଁ । ସବୁ ଗୋରୁଙ୍କ ମୁହଁରେ ବି ଗୋଟାଏ ଗରିଷ୍ଠ ସାଧାରଣ ଗୁଣନୀୟକ ସାମଞ୍ଜସ୍ୟ ଦେଖାଯାଏ ।

ଖଗେଶ୍ୱରବାବୁ ଖୁବ୍ ଆହତ ହେଲେ; ମାତ୍ର ଭବିଷ୍ୟତରେ ଆଉ କେତେ ଯେ ଅପମାନ ସହ୍ୟ କରିବାକୁ ପଡ଼ିପାରେ, ଏହା ଭାବି ଅତି ବିନୀତ ହୋଇ କହିଲେ—ମହାଶୟ ! ଗୋ-ଶାଳାରେ ରହିଲେ ଗୋରୁଙ୍କ ବ୍ୟତୀତ ଅଉ କିଛି ଉଦାହରଣ ମଣିଷର ମୁଣ୍ଡକୁ ଜୁଟେ

ନାହିଁ—ଏହା ସ୍ତବ୍ଧବକ କଥା । ଆମେ କାଳୁ ଆପଣଙ୍କୁ କାମଧେନୁମାର୍କା ଗୋ-ଖାଦ୍ୟର ଠିକଣା ପଗ୍ଭରୁଛୁ । ଆମର ଧାରଣା ଗୋ-ତତ୍ତ୍ୱବିତ୍ ଆପଣଙ୍କ ଭଳି ବ୍ୟକ୍ତି ନିଶ୍ଚୟ ଏହାର ସନ୍ଧାନ ଦେଇପାରିବେ । ଅଲଂ ଅଧିକ ଆଲାପେନ ।

ଗୋ-ଶାଳାଗତ ଭଦ୍ରବ୍ୟକ୍ତି ଆଉ ଅଧିକ ବାକ୍ୟାଳାପ ଅସଙ୍ଗତ ମନେକରି ପୂର୍ବବତ୍ ଅଧିକ ଗମ୍ଭୀର ହୋଇ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ—ହେଇ ସେହି ଯୋଉଁ ସରକାରୀ ଘରଦାଣ୍ଡ ଦେଖାଯାଉଛି, ଯାହା ଉପରେ ଚିଲ, ଶାଗୁଣା ପେଚକାଦି ବାରମ୍ବାର ଉଡ଼ୁଛନ୍ତି ଓ ବାରମ୍ବାର ବସୁଛନ୍ତି—ଆପଣ ସେଇଠିକି ଯାଆନ୍ତୁ, ସବୁ ବିଷୟ ଜାଣିପାରିବେ ।

ଖଗେଶ୍ୱରବାବୁ ସତର୍କ ହୋଇ କହିଲେ—ଆଜ୍ଞା ! ମୁଁ ସବୁବିଷୟ ଜାଣିବାକୁ ଆଗ୍ରହୀ ନୁହେଁ—କେବଳ କାମଧେନୁମାର୍କା ଗୋ-ଖାଦ୍ୟ ସଷ୍ଟାର ଠିକଣାଟି ଜାଣିବାକୁ ବ୍ୟାକୁଳ ।

ଗୋ-ଶାଳାଗତ ଭଦ୍ରବ୍ୟକ୍ତି ସାମାନ୍ୟ ହସି ଓ ସାମାନ୍ୟ କାଶି କହିଲେ—ସବୁ ଜାଣିଲେ ତାହା ଜାଣିବେ ଓ ତାହା ଜାଣିଲେ ସବୁ ଜାଣିବେ । ଯା'ନ୍ତୁ—ଅଲଂ ଅତ ବିଲମ୍ବେନ ।

କଥା କଟାକଟି ବଡ଼ ବିରକ୍ତିକର ବ୍ୟାପାର । ମାତ୍ର କେମିତି କେଜାଣି ସେହି ମୁହୂର୍ତ୍ତରେ ବି ସେହି ଚଡ଼ଚଡ଼ା ଲୋକଟି ସାଙ୍ଗେ କ୍ଷଣକଲାଗି ହେଉ ପଛେ ଗୋଟାଏ ପ୍ରକାରର ସପ୍ରୀତି ସମ୍ପର୍କ ଥାପିବାକୁ ଖଗେଶ୍ୱରବାବୁଙ୍କ ମନରେ ବାସନା ଜାଗ୍ରତ ହୋଇଗଲା । ସେ ଖୁବ୍ କୋମଳପ୍ରୀତିଯୁକ୍ତ ଗଳାରେ ପଗ୍ଭରିଲେ—ଆଜ୍ଞା ! ଆପଣ କଣ ଏଠି ରହନ୍ତି ?

ଗମ୍ଭୀର ଭଦ୍ରବ୍ୟକ୍ତି କହିଲେ—ଏହା ଗୋ-ଶାଳା—ମଣିଷଲାଗି ଉଦ୍ଦିଷ୍ଟ ନୁହେଁ ।

ଖଗେଶ୍ୱରବାବୁଙ୍କର ପ୍ରସାରିତ ପ୍ରୀତି-ଚକ୍ରରେ ସାମାନ୍ୟ ଧକ୍କା ହେବାରୁ ସେ ବିରକ୍ତ ହୋଇ କହିଲେ—ତା ନିଶ୍ଚୟ ! ମାତ୍ର ଗୋରୁମାନଙ୍କ ଲାଗି ତ ଏଠି କେହି ମନୁଷ୍ୟ ଉଦ୍ଦିଷ୍ଟ ଥିବେ ?

ଭଦ୍ରବ୍ୟକ୍ତି କହିଲେ—ନା ଏଠାରେ ଗୋ-ମହିଷାଦି ପଶୁମାନେ ସର୍ବଦା ସହରସାରା ବିଚରଣ କରନ୍ତି ଓ ସନ୍ଧ୍ୟାପୂର୍ବରୁ ଦୋହନଲାଗି ଆପଣାଗ୍ଭରେଁ ଏଠାକୁ ଗ୍ଭଲିଆସନ୍ତି । ଏଠି ରାତ୍ରି ଯାପନ କରି ସହର ବଜାରରେ ଯାହା ଖାଇଥାନ୍ତି, ତାହା ଏଠି ରୋମନ୍ଥନ କରି ହଜମ କରନ୍ତି ଓ ମଳ ନିଷ୍କାସନ କରିଥାଆନ୍ତି । ତା'ପରେ ଠିକ୍ ସକାଳୁ ସକାଳୁ ମାନେ ଆଠଟା ପୂର୍ବରୁ ଖାଦ୍ୟ ସଂଗ୍ରହ ଲାଗି ସହରଭ୍ୟନ୍ତରକୁ ଗ୍ଭଲିଯାନ୍ତି । ଗୋରୁଙ୍କ ଲାଗି ଏଠି ମଣିଷ ରହିବା ନିଷ୍ପ୍ରୟୋଜନ । ହଉ—ଯାନ୍ତୁ । ବହୁତ ଗପ ହୋଇଗଲା । ଗୋରୁମାନେ ଭଲ । ସେମାନଙ୍କୁ ଏତେ ଗପିବାକୁ ପଡ଼େନାହିଁ ।

ଖଗେଶ୍ୱରବାବୁ ସପୂତ ନିର୍ଦ୍ଦେଶିତ ପଥରେ ଗ୍ଭଲିଲେ । ବିରାଟ ଏକ ସଷ୍ଟା । ମାତ୍ର ସେହି ସରକାରୀ କୋଠାବାଡ଼ି ଭିତରେ ବି ହଜାରେ ଗଳି, ଦେଢ଼ହଜାର ଉପଗଳି । ବହୁ ମଟର, ଟ୍ରକ, ଜିପ୍, ଟ୍ରଲି, ଶଗଡ଼, ସ୍କୁଟର ଓ ସାଇକେଲ ବି ରହିଛନ୍ତି । ତା' ଭିତରେ ଭିତରେ ହଜାରେ ଅଫିସ । ସତର୍କ ଅଫିସର, କର୍ତ୍ତବ୍ୟରତ ଆସିଷ୍ଟାଣ୍ଟ ଓ ବହୁ ଦାୟିତ୍ୱଶୀଳ ଚତୁର୍ଥ

ଶ୍ରେଣୀ କର୍ମଗ୍ଭରୀଗଣ ପୂରା ରହୁଛନ୍ତି । କେତେକ ମଧ୍ୟ ଘରଦର ପୂର୍ଣ୍ଣ ହୋଇଯିବାରୁ ବାହାରକୁ ଛୁଟିକପଡ଼ ଗ୍ଭଲଗ୍ଭଲ୍ କରୁଛନ୍ତି, କେହି କେହି ବା ଗଡ଼ାଗଡ଼ କରୁଛନ୍ତି ।

ସେହି ଜଟିଳ ସରକାରୀ ହର୍ମ୍ୟାବଳୀ ଭିତରେ ପଗ୍ଭରି ପଗ୍ଭରି ସାଇନ୍‌ବୋର୍ଡ଼ ଦେଖି ଦେଖି ସେମାନେ ଗୋଟିଏ ଅନ୍ଧାରିଆ ସ୍ଥାନରେ ଯାଇ କାମଧେନୁମାର୍କା ବିଶୁଦ୍ଧ ପୁଷ୍ଟିକର ଗୋ-ଖାଦ୍ୟ ସଂସ୍ଥା ପାଖେ ପହଞ୍ଚିଲେ । ପହଞ୍ଚିଲେ ଖଗେଶ୍ୱରବାବୁ ଖୁବ୍ ଖୁସି ହୋଇ ଅଫିସ ଭିତରକୁ ମୁହାଁଇ ଗଲାବେଳକୁ ବାହାରେ ଢୁଳାଉଥିବା ଚତୁର୍ଥ ଶ୍ରେଣୀ କର୍ମଗ୍ଭରୀ ଉପରେ ଝୁଣ୍ଟି ପଡ଼ିଲେ । ସେ ଢୁଳାଇ ଢୁଳାଇ ତାଙ୍କ ଶ୍ରୀମସ୍ତକଟି ଲମ୍ବଗ୍ରୀବାଟିସମେତ ଦୁଆରର ଆଡ଼କୁ ନଇଁପଡ଼ିଥିଲା । ଚତୁର୍ଥ ଶ୍ରେଣୀ କର୍ମଗ୍ଭରୀ ମହାଶୟ ଖଗେଶ୍ୱରବାବୁଙ୍କ ଉପରେ ଛେପିଯାଇ କହିଲେ—କଣ ଘୁମେଇ ଘୁମେଇ ଗ୍ଭଲୁଛ ନା କଣ ? ମଣିଷ ଦେଖାଯାଉ ନାହାନ୍ତି ?

ଖଗେଶ୍ୱରବାବୁ କହିଲେ—କ୍ଷମାକରନ୍ତୁ ଆଜ୍ଞା ! ମୁଁ ଅଫିସରେ ବାଟ ଗ୍ଭଲିବାରୁ ଏ ଦୁର୍ଘଟଣା ଘଟିଗଲା । ଏଣିକି ଆଖିବୁଜି ବାଟଗ୍ଭଲିବାର ଅଭ୍ୟାସ କରିବି । ମତେ ଛାଡ଼ନ୍ତୁ ।

ଛାଡ଼ିବି କୁଆଡ଼େ ? ଆଗ ସ୍ଲିପ୍ ଦିଅ । ଅଫିସର୍ ଛେପିବେ ।

ଖଗେଶ୍ୱରବାବୁ କାଗଜ ଖଣ୍ଡିଏ ଲଗି ପକେଟ ଅଣ୍ଡାଳୁ ଅଣ୍ଡାଳୁ ତାଙ୍କର କଲେଜ ପଢ଼ୁଆପୁଅ ଜବରଦସ୍ତ ଅଫିସରଙ୍କ ଦପ୍ତର ଭିତରକୁ ପଶିଗଲା ଏବଂ ସଙ୍ଗେ ସଙ୍ଗେ ଫେରିଆସିଲା ।

କରେ କଥା କ'ଣ ?

କଥା ଆଉ କଣ ବାପା—ଅଫିସର ଶୋଇଛନ୍ତି । ଘୁଂଗୁଡ଼ିରେ ଅଫିସ କଂପୁଛି ।

ଚତୁର୍ଥଶ୍ରେଣୀ କର୍ମଗ୍ଭରୀଟି ନିଜର ମନ ଓରମାନ ମେଣ୍ଟାଇବା ଲାଗି କହିଲେ—ଦେଖିଲ ତ ? ଏଇଥିଲାଗି ଏମାନେ ଆମଠାରୁ ଗ୍ଭରି-ପାଞ୍ଚଗୁଣ ଦରମା ଅଧିକା ପାଉଛନ୍ତି । ଆମ ଆସୋସିଏସନ୍ ଏଥିଲାଗି ଆନ୍ଦୋଳନ କରୁଛି—ଏଥର ମଜା ଛାଡ଼ିଯିବ ଯେ !

ଖଗେଶ୍ୱରବାବୁ କହିଲେ—ନିଶ୍ଚୟ ନିଶ୍ଚୟ, ଓ୍ୱାଜିବ୍ କଥା । ଗଣତନ୍ତ୍ରଯୁଗରେ ଅଫିସର ଶୋଇବେ ମହାଆରାମ୍‌ରେ ଅଫିସ ଭିତରେ—ଆଉ ସ୍ୱଳ୍ପ ବେତନଭୋଗୀ ଚତୁର୍ଥଶ୍ରେଣୀ କର୍ମଗ୍ଭରୀ ବାହାରେ ସାମାନ୍ୟ ଖଣ୍ଡିଏ ଷ୍ଟୁଲ୍ ଉପରେ ବସି ଘୁମାଇବେ ? ଷ୍ଟୁଲ୍ ଉପରେ ବସି କିଏ ଶୋଇପାରିବ ?

ଚତୁର୍ଥଶ୍ରେଣୀ କର୍ମଗ୍ଭରୀ ଉଲ୍ଲସିତ ହୋଇ କହିଲେ—ସେକଥା କେତେଜଣ ବୁଝୁଛନ୍ତି ? ହଉ ବାବୁ—ତୁମର କଣ କାମ ?

ଖଗେଶ୍ୱରବାବୁ ତାଙ୍କ ଆସିବା ଉଦ୍ଦେଶ୍ୟଟି ସଂକ୍ଷେପରେ କହନ୍ତେ ଚତୁର୍ଥଶ୍ରେଣୀ ବାବୁ କହିଲେ—ଏଥିପାଇଁ ପ୍ରଥମଶ୍ରେଣୀ ଅଫିସରଙ୍କ ପାଖକୁ ଯିବା ଦରକାର୍ କ'ଣ ? ଯାନ୍ତୁ

ହେଇ ସେ ରୁମ୍‌ଟା—ସେଠି ତୃତୀୟଶ୍ରେଣୀ କର୍ମଚାରୀମାନେ ତୁମକୁ ସେ ଭେଦ ବତାଇଦେବେ ।

ଚତୁର୍ଥଶ୍ରେଣୀଙ୍କୁ ଯଥାମାନ୍ୟ ଜଣାଇ ଖଗେଶ୍ୱରବାବୁ ସପୁତ୍ର ତୃତୀୟଶ୍ରେଣୀ କର୍ମଚାରୀଙ୍କ କୋଠରିକୁ ପ୍ରବେଶ କରି ସମସ୍ତଙ୍କୁ ମଥାବନତ କରି ଯଥାବିଧି ପ୍ରଣାମ ଜଣାଇ ନିଜର ଉଦ୍ଦେଶ୍ୟ ଜ୍ଞାପନ କଲେ । ଗୋଟିଏ ଟେବୁଲ୍‌କୁ ଘେରି ଚାରିଜଣ ତୃତୀୟ ଶ୍ରେଣୀବାଲା ପକୋଡ଼ି ଓ ଚା' ସେବା କରୁଥିଲେ । ତଥାପି ତାଙ୍କ ଭିତରୁ ଜଣେ କହିଲେ—ଭଲକଲେ ଆଜ୍ଞା ଆସିଲେ । ଆମେ ଆପଣଙ୍କୁ କେତେକ ଛାପାକାଗଜ ଦେଉଛୁ । ସେଥିରେ ସବୁକଥା ଲେଖାହୋଇଛି ପଢ଼ିବେ ।

ଖଗେଶ୍ୱରବାବୁ କହିଲେ—ଆଜ୍ଞା ମୁଁ ପଢ଼ାପଢ଼ି ବହୁକାଳୁ ଛାଡ଼ିଲିଣି । ମୁଁ କେବଳ ଗୋ-ଖାଦ୍ୟ······

କିଛି ପକୋଡ଼ି ପାଟିରେ ପୂରାଇ ସାମାନ୍ୟ ବିରକ୍ତିସହ କର୍ମଚାରୀ ଜଣକ କହିଲେ—ସେଇକଥା କହୁଛି ବାବୁ—ଏ କାଗଜରେ ସବୁକଥା ପରିଷ୍କାର ଭାବେ ବୁଝାଇ ଦିଆଯାଇଛି । ଗାଈର ବୟସ—କି ପ୍ରକାର ଗାଈ—ତାର ସ୍ୱାସ୍ଥ୍ୟରକ୍ଷା ବିଧାନ ଓ ତାକୁ ଖାଦ୍ୟ ଦେବାର ପ୍ରଣାଳୀ ।

ଖଗେଶ୍ୱରବାବୁ କହିଲେ—ଆଜ୍ଞା, ମୁଁ ଗୋ-ଖାଦ୍ୟ ବସ୍ତାଟି ନେବାକୁ ଆସିଛି । ତତ୍ସମ୍ପର୍କୀୟ ଜ୍ଞାନ ଅର୍ଜନ ଲାଗି ନୁହଁ । ତଥାପି ଜ୍ଞାନ ଅର୍ଜନ କରିବାରେ ମୋର କୁଣ୍ଠା ନାହିଁ; କିନ୍ତୁ ସେହି ବିଜ୍ଞାନ ପ୍ରଣାଳୀରେ ପ୍ରସ୍ତୁତ କାମଧେନୁମାର୍କା ପୁଷ୍ଟିକାରକ ଗୋ-ଖାଦ୍ୟଟି କାହିଁ—ତାହା ଆଗ ଦିଅନ୍ତୁ । ଚାରି ଘଣ୍ଟାକାଳ ବାପ ପୁଅ ଦୁହେଁ ବୁଲିବୁଲି ଥକିପଡ଼ିଲୁଣି ।

ଖଗେଶ୍ୱରବାବୁ ଜାଣନ୍ତି ନାହିଁ ଚତୁର୍ଥଶ୍ରେଣୀ କର୍ମଚାରୀ ବାବୁ ଜଣକ ତାଙ୍କ ପଛରେ ଠିଆହୋଇଛନ୍ତି । ତାଙ୍କଠାରୁ ଏକଥା ଶୁଣି ସେ ଗୋଟିଏ ଗ୍ରାମ୍ୟ ଶ୍ଳୋକ ବୋଲି ଉପହାସ କରି କହିଲେ—ବୁଝିଲି ବାବୁ ! ଯାହା କହନ୍ତି ନା—"ବାପ ପୁଅ ଦହେଁ ସ୍ୱାଧ ଅନିଦ୍ରା—ମୁଗୁର ଗାଣ୍ଡି ମେଳ—ତେମେ ବାବୁ ଅଫିସକୁ ଆଇଚ ଗୋ-ଖାଦ୍ୟ କିଣିବ ବୋଲି ଏଠି କଣ ଗୋ-ଖାଦ୍ୟ ମିଳେ ?"

ଖଗେଶ୍ୱରବାବୁଙ୍କ କଲେଜପଢ଼ୁଆ ପୁଅ ଭୀଷଣ ରାଗିଉଠିଲା ଏକବାରେ । ସେ କହିଲା—ଖୁବ୍ ଅଫିସ୍ ତୁମର ଏଠି ଗୋଲିଛି ନାହିଁ ? ଭୁବନେଶ୍ୱରଠାରୁ କଟକ ଯାଏ ସାଇନ୍‌ବୋର୍ଡ଼ ମାରିଛି—ତଳେ ଲେଖିଛି କିଲପଡ଼ିଆ ଠିକଣା, ଆମେ ଜାଣିବୁ କିପରି ? ଏଇଟା ଏମିତି କୋଉ ଗୋଟାଏ ବଡ଼ ଅଫିସ୍ ଯେ—କିଲପଡ଼ିଆ ଲେଖିଦେଲେ ଜାଣିହେବ ? କାହିଁ ଲେଖିଦେଇନ ଖାଲି କଟକ ବୋଲି ?

ଖଗେଶ୍ୱର ପୁଅ ପିଠିରେ ହାତ ମାରି ତାକୁ ଶାନ୍ତ କରି କହିଲେ—ଶାନ୍ତ ହୁଅ ବତ୍ସ ! ଏଇଟା ତୁମର କଲେଜ ନୁହଁ—କି ଏମାନେ ତୁମର ଅଧ୍ୟାପକ ନୁହନ୍ତି । ଏମାନେ

ଭାରତଭଳି ଜନମଙ୍ଗଳ ଗଣତାନ୍ତ୍ରିକ ଦେଶର କର୍ମଚାରୀ । ପୁଣି ଏମାନଙ୍କୁ ନେଇ ସମାଜବାଦର ପରୀକ୍ଷା ଚାଲିବ । ଏଭଳିକାରେ ରାଗିଯିବା ଠିକ୍ ନୁହଁ । କ୍ରୋଧ ମାନବର ବଡ଼ ଶତ୍ରୁ । କ୍ରୋଧରୁ ବୁଦ୍ଧି ନାଶ ଓ ବୁଦ୍ଧିନାଶାତ୍ ପ୍ରଣଶ୍ୟତି ବୋଲି ଗୀତା କହୁଛି । ସେ କଥା ଛାଡ଼ନ୍ତୁ । ଆପଣ ବାବୁମାନେ ଶୁଣିବାହେଉନ୍ତୁ । ସେ କ୍ରୋଧୀ ଯୁବକଙ୍କ କଥା ଶୁଣନ୍ତୁ ନାହିଁ । ସେମାନେ ହେଲେ କଲେଜପିଲା । ତାଙ୍କର ମୁଣ୍ଡ ଠିକ୍ ନାହିଁ କି ଗୁଣ୍ଡ ଠିକ୍ ନାହିଁ । ଅସଲ କଥା ମୋଠାରୁ ଶୁଣନ୍ତୁ—ମୁଁ ତାର ଅସଲ ପିତା— । ଠିକ୍ କରି କହନ୍ତୁ—କାମଧେନୁମାର୍କା ପୁଷ୍ଟିକାରକ ଗୋଖାଦ୍ୟ ସତରେ ଅଛି କି ନାହିଁ—ଯଦି ଅଛି, ତାହା କେଉଁଠି ମିଳେ ? ଏଠି ଯଦି ନ ମିଳିବା ଉଚିତ, ତେବେ ନ ମିଳୁ । ସେଥିରେ କିଛି ପୃଥିବୀର କ୍ଷତି ହୋଇଯିବନାହିଁ । ତେବେ ସେହି ଅମୂଲ୍ୟ ପଦାର୍ଥଟି ମିଳେ କେଉଁଠି ?

ତୃତୀୟ ଶ୍ରେଣୀ କର୍ମଚାରୀମାନେ କାଗଜ ଦି'ଖଣ୍ଡ ଧରାଇଦେଇ ସେଠାରୁ ଉଠି ଯାଉଥିଲେ । ଚତୁର୍ଥଶ୍ରେଣୀ ବାବୁ କହିଲେ—ଆପଣ ବାବୁ ଯାଅ—ନୂଆବଜାର ପାରି ହୋଇଯିବ । ପଡ଼ିବ ଏକ ପେଟ୍ରୋଲ ପମ୍ପ । ତା' ଡାହାଣକଡ଼ ରାସ୍ତା ଛାଡ଼ିଦେବ । ବାଁ-ପଟ ରାସ୍ତା ବି ଛାଡ଼ିଦେବ । ସିଧା ଗୋଟେ ଗଳିରାସ୍ତା ପଡ଼ିଛି । ସେଇବାଟେ ଗୋଟିଏ କଲେମିଟର ରାସ୍ତା ଯାଇଛି କି ନାହିଁ—ଦେଖିବ ଜଣେ ପଶୁଡାକ୍ତରଙ୍କ ଘର । ସେଇଟି ତାଙ୍କର ପ୍ରାଇଭେଟ ପଶୁଡାକ୍ତରଖାନା । ସେଇ ଏ କାମଧେନୁମାର୍କା ଗୋଖାଦ୍ୟ ବିକିବା ଦାୟିତ୍ୱରେ ଅଛନ୍ତି । ସେଇଠି ପାଇବ । ବାବୁ ! କେଇଟା ଗାଈ ରଖିଛ ? କଣ ଜର୍ସି ନା ହରିଆନା ?

ନୂଆବଜାରର ଦୂରତ୍ୱକଥା ଭାବି ଖଗେଶ୍ୱରବାବୁଙ୍କ ମୁଣ୍ଡରେ ବଜ୍ରପାତ ହେବାଭଳି ବୋଧ ହେଲେ ବି—କାମଧେନୁମାର୍କା ଗୋଖାଦ୍ୟ ସତକୁସତ ବାସ୍ତବରେ ଅଛି ଓ ତାହା ଏକ ନିର୍ଦ୍ଦିଷ୍ଟ ଜାଗାରେ ମିଳିବାର ନିଶ୍ଚିନ୍ତତା, ଖଗେଶ୍ୱରବାବୁଙ୍କୁ ପୁଣି ଏକ ସାହସିକ ପ୍ରୟାସ ଓ ପ୍ରଯତ୍ନର ପ୍ରେରଣା ଦେଲା । ସେ ପୁଅକୁ କହିଲେ—ଆଉ ଡେରି କରନା ବାବୁ ! ଚାଲ ନୂଆବଜାର, ରେକ୍ସାଟେ ଡାକ । ଅଜି ଜିନିଷଟା ନିଶ୍ଚୟ ନେବା—ନହେବା ତୁମର ମା'ଆ ଠାକୁରାଣୀ ଆଉ ମୋତେ ଘରେ ରଖାଇ ଦେବେନାହିଁ ।

ପିତୃଭକ୍ତ ପୁଅଟି ରେକ୍ସା ଡାକିବାକୁ ଚାଲିଗଲା । ଏହି ସମୟରେ ଚତୁର୍ଥଶ୍ରେଣୀ କର୍ମଚାରୀ ବାବୁ ନିଜର ଯଥେଷ୍ଟ ଆତ୍ମଗୌରବ ବଜାୟରଖି ଖଗେଶ୍ୱରବାବୁଙ୍କ ଉଦ୍ଦେଶ୍ୟରେ କହିଲେ—ଜିନିଷ ସପ୍ଲାଇ ଖୁବ୍ କମ୍ ହେଉଛି ବାବୁ ! ଆଜିକାଲି ସମସ୍ତେ ତା' ପିଛା ପଡ଼ିଲେଣି । ସେଥିଲାଗି ବାବୁମାନେ ସେ ଜିନିଷ ମିଳିବାର ଠିକଣା ନ ବତାଇ ଚାଲିଗଲେ—ଦେଖିଲେ ତ ? ମୁଁ କହିଦେଲି—ତୁମ ବାପ ପୁଅ ଦିହେଁ ଏତେ ହଇରାଣ ହେବା ଦେଖି କହିଦେଲି । ହଉ ! ମୋ ପାଉଣାଟା ମିଳିଯାଉ ।

ସେ ଗୋଟିଏ ଆଙ୍ଗୁଠି ଦେଖାଇଲେ । ଖଗେଶ୍ୱରବାବୁ ଟଙ୍କାଟିଏ ତାଙ୍କୁ ବଢ଼ାଇଦେଇ ଏବଂ ନମସ୍କାର କରି ରେକ୍ସାରେ ବସିଲେ ।

## ଦ୍ୱିତୀୟ ଦୃଶ୍ୟ

ଯଥାସ୍ଥାନରେ ପହଞ୍ଚି ପିତା ପୁତ୍ର ଦୁହେଁ ଦେଖିଲେ ଯେ ବେଶ୍ ଗୋଟାଏ ବଡ଼ ହତା ଥିବା ଘର । ସାଇନ୍‌ବୋର୍ଡ଼ରେ ଡାକ୍ତରବାବୁଙ୍କ ନାମ ଓ ତା'ଠାରୁ ଚାରିଗୁଣା ଲମ୍ବା ଉପାଧି ଲିଖିତ । 'ଏଠାରେ ବହୁପ୍ରକାର କୁକୁଡ଼ା ଓ ଗୋ-ଖାଦ୍ୟ ମିଳେ' ବୋଲି ଲେଖା ହୋଇଛି ।

ହତାଯାକ ବହୁ ଦୁଧିଆଳୀ ସ୍ୱାସ୍ଥ୍ୟବତୀ ଓ ରୂପବତୀ ଗାଈମାନେ ବନ୍ଧାହୋଇଛନ୍ତି । କେତେ ବି ଦୁହାଁହେଉଛନ୍ତି । ଏକ ବିରାଟ କୁକୁଡ଼ାଘରେ ପ୍ରାୟ ଏକହଜାର କୁକୁଡ଼ା ବି ପାଳିତ ହୋଇଛନ୍ତି । ତା'ଭିତରୁ କେତେକ ଲୋକ ଝୁଡ଼ି ଝୁଡ଼ି ଅଣ୍ଡା ସଂଗ୍ରହ କରିଚାଲିଛନ୍ତି । ପଶୁଡାକ୍ତରବାବୁ ଖୁବ୍ ଗମ୍ଭୀର ହୋଇ ଟେବୁଲ ପାଖେ ବସିଥିଲେ । ତାଙ୍କ ଆଖିରେ ଖୁବ୍ ମୋଟା ହାଇପାବାରର ଚଷମା । ଟେବୁଲ ଉପରେ ବିଭିନ୍ନ ପ୍ରକାର ପାଉଡ଼ରକ ପେଟେଣ୍ଟ ଔଷଧଗୁଡ଼ିକ ଥୁଆହୋଇଥାଏ । ବାଛୁରି ଖାସି ଯନ୍ତ୍ରଟିଏ ବି ଥୁଆହୋଇଥାଏ । ଆଉ ଦୁଇ ତିନିଟା ଯନ୍ତ୍ରପାତି ବି ଥାଏ । ଦୁଇ ତିନିଜଣ ଲୋକ ଚାରିପଟେ ଘେରିବସି କଣ ପରାମର୍ଶ ନେଉଥାନ୍ତି । ଟେବୁଲ ଉପରେ ବିଭିନ୍ନ ପ୍ଲେଟ ପ୍ଲେଟ ଟ୍ରେରେ ବିଭିନ୍ନ ଧରଣର ବିଚିତ୍ର ଗନ୍ଧକାରୀ ଗୋଖାଦ୍ୟ ଚୂର୍ଣ୍ଣମାନ ପ୍ରଦର୍ଶନୀ ଲାଗି ରଖାହୋଇଥାଏ ।

ନମସ୍କାର ହୁଅନ୍ତେ—ଡାକ୍ତରବାବୁ ପଚାରିଲେ—କ'ଣ ଗାଈ ନା କୁକୁଡ଼ା ?

ନାଇଁ ଆଜ୍ଞା ଗାଈ !

କଣ ହୋଇଛି—ଫାଟୁଆ ?

ନାଇଁ ଆଜ୍ଞା—ମୋର ବସ୍ତାଏ କାମଧେନୁମାର୍କା ଗୋଖାଦ୍ୟ ଦରକାର ।

ଡାକ୍ତରବାବୁ ଭ୍ରୂକୁଂଚିତ କରି କହିଲେ—କାମଧେନୁମାର୍କା ଗୋଖାଦ୍ୟ ଅବଶ୍ୟ ମୋ ପାଖେ ଅଛି; ମାତ୍ର ଆପଣ ସେଥିରୁ ବିଶେଷ ଫଳ ପାଇବେନି । ତାହାର ଷ୍ଟାଣ୍ଡାର୍ଡ଼ କମିଗଲଣି ।

ତା'ପରେ ସେ ଗୋଟିଏ ଟ୍ରେରୁ କିଛି ଚୂର୍ଣ୍ଣ ଦେଖାଇ କହିଲେ—ହେଇ ଦେଖନ୍ତୁ । ଏଇଟା ହେଉଛି ସୁପର୍ କାମଧେନୁମାର୍କା ଗୋଖାଦ୍ୟ । ଏହାର ରଙ୍ଗ କଳା; ମାତ୍ର ପାଣିରେ ମିଶାଇଲେ ଏହା ଧଳା ଦେଖାଯିବ । କଲିକତାର ଏକ ପ୍ରସିଦ୍ଧ ଫାର୍ମ ଏ ଖାଦ୍ୟ ଏବେ ପେଟେଣ୍ଟ କରିଛି । ଏ ଖାଦ୍ୟରେ ଆଠପ୍ରକାର ଲବଣ, ପ୍ରୋଟିନ୍ ଭିଟାମିନ, ମିନେରାଲ ଓ ତାକୁ ସହଜରେ ହଜମ କରିବାଲାଗି ଏକପ୍ରକାର ଜାଇମ୍ ମଧ୍ୟ ରହିଛି । ଆପଣ ଏଇଟା ନିଅନ୍ତୁ ଦେଖିବେ—ଆପଣଙ୍କ ଗାଈର ଶରୀର ପୁଷ୍ଟ ହେବା ସଙ୍ଗେ ସଙ୍ଗେ ଦୁଧ ମଧ୍ୟ ଚାରିଗୁଣ ବଢ଼ିଯିବ । ମାତ୍ର ଆମ ଓଡ଼ିଶାର ଏ କାମଧେନୁମାର୍କା ଗୋଖାଦ୍ୟ ଦେଲେ—ଗାଈ ଦୁଧ ଦେବ ନିଶ୍ଚୟ; ମାତ୍ର ତାର ସ୍ୱାସ୍ଥ୍ୟ କମିଯିବ—ଏହା ପରୀକ୍ଷିତ । ଆମର ଓଡ଼ିଆଣୀ ଗୃହିଣୀମାନଙ୍କ ଭଳି···ହେଃ ହେଃ ହେଃ (ସେ ହସିଲେ) ।

ଖଗେଶ୍ୱରବାବୁ କହିଲେ—ଆପଣ ପଶୁଡାକ୍ତର !

ଡାକ୍ତରବାବୁ କହିଲେ—ପଶୁଡାକ୍ତରମାନେ ପଶୁଙ୍କ ଲାଗି ଡାକ୍ତର । କିନ୍ତୁ ମୁଁ ବି ମଣିଷ-ମାନଙ୍କର ଚିକିତ୍ସା କରେ । ହେଇ, ଏ ବାବୁମାନେ ତାଙ୍କ ଗାଈ ଗୋରୁଙ୍କ ରୋଗ ଲାଗି ମୋ ପାଖକୁ ଆସିନାହାନ୍ତି—ନିଜ ରୋଗ ଚିକିତ୍ସା ଲାଗି ଆସିଛନ୍ତି ।

ଖଗେଶ୍ୱରବାବୁ ହସି ହସି କହିଲେ—ହଁ ଆଜ୍ଞା ! ମଣିଷ ତ ଅଧିକରୁ ବେଶି ଭାଗ ପଶୁ । ତା'ଛଡ଼ା ଅଧିକାଂଶ ମଣିଷଙ୍କର ଆଜିକାଲି ଡୋଜ୍ ମେଡ଼ିସିନ ଦରକାର । ରୋଗର ଲକ୍ଷଣ ବି ଅନେକ ମଣିଷଙ୍କ ପକ୍ଷରେ ପୂର୍ବ ପାଶବୀୟ । ତା'ଛଡ଼ା ବହୁମଣିଷଙ୍କୁ ବି ପାଶବିକ ସ୍ତରରେ ଚିକିତ୍ସା କରିବାକୁ ପଡ଼େ । ସେଇପରି ମଣିଷମାନଙ୍କୁ ଏ ମଣିଷ-ଡାକ୍ତରମାନେ କଣ ଚିକିତ୍ସା କରିବେ ନା କରିପାରିବେ ?

ପଶୁଡାକ୍ତର ଆହୁରି ଫୁଲିଯାଇ ଉତ୍ସାହିତ ହୋଇ କହିଲେ—କିଓ, ଆମେ ତ ଫେର୍ ମାଙ୍କଡ଼ମାନଙ୍କୁ ଚିକିତ୍ସା କରୁଛୁ । ମାଙ୍କଡ଼ କିଏ, ଆଉ ମଣିଷ କିଏ ? ଏକା ଫିଜିଓଲୋଜି, ଏକା ପାଥୋଲୋଜି ଓ ଏକା ମେଡ଼ିସିନ୍ । ଟିକିଏ ଏପଟ ସେପଟ ।

ଖଗେଶ୍ୱରବାବୁ ଏଥର ବିନୀତ ହୋଇ କହିଲେ—ଆଜ୍ଞା ! ଆପଣ ପରା କାମଧେନୁ-ମାର୍କା ଗୋଖାଦ୍ୟର ଭାରପ୍ରାପ୍ତ ବିକ୍ରେତା ? ତେବେ ଅନ୍ୟପ୍ରକାର ଗୋଖାଦ୍ୟ ବିକୁଛନ୍ତି କିପରି ?

ପଶୁଡାକ୍ତର କହିଲେ—ସେ ସବୁ ଆଲୋଚନା ଛାଡ଼ନ୍ତୁ । କିଏ କାହାର ଭାରପ୍ରାପ୍ତ ? ମୁଁ ଡାକ୍ତର, ଗୋରୁଙ୍କର ସ୍ୱାସ୍ଥ୍ୟର ଉନ୍ନତି ଦେଖିବା ମୋର କାମ । ଯୋଉ ଖାଦ୍ୟ ଭଲ ମୁଁ ତାହା ବିକିବି । ଗୋରୁ ଯେପରି ସମଗ୍ର ପୃଥିବୀର—ତାଙ୍କ ଖାଦ୍ୟ ମଧ୍ୟ ତଦ୍ରୂପ । ସେଥିରେ ପ୍ରାଦେଶିକତା ଦେଖିଲେ ଚଳିବ ନାହିଁ । ତେବେ ଆପଣ ମୋ କଥା ମାନି ସୁପର୍ କାମଧେନୁ-ଗୋଖାଦ୍ୟ କିଣିନିଅନ୍ତୁ । ଦାମ୍‌ରେ ସାମାନ୍ୟ ତଫାତ୍ । କେ:ଜ:କେ ଗୋଟିଏ ପଇସା ଅଧିକା । ମାତ୍ର ଫଳ ପାଇବେ ଦୁଇଗୁଣ ।

ଖଗେଶ୍ୱରବାବୁ କହିଲେ—ଆଜ୍ଞା ! ମୋତେ ଅର୍ଡ଼ିନାରି କାମଧେନୁ ଓ ସୁପର କାମଧେନୁ ଦୁଇପ୍ରକାର ଖାଦ୍ୟରୁ ଦଶ ଦଶ ଟଙ୍କାର ଦିଅନ୍ତୁ; ଆଉ ଗୋଟିଏ ଅଧିକା ବସ୍ତା ବି ଦିଅନ୍ତୁ, ମୁଁ ଆଗ ପରୀକ୍ଷା କରି ଦେଖେ । କୋଉଟା ମୋ ଗାଈର କେତେ ଦୁଧ ଓ ସ୍ୱାସ୍ଥ୍ୟ ବଢ଼ାଉଛି । ତାପରେ ଦେଖିବା ।

ଦୁଇଟି ଯାନବସ୍ତାରେ ଦୁଇବସ୍ତା ବୈଜ୍ଞାନିକ ପ୍ରଣାଳୀରେ ପ୍ରସ୍ତୁତ କାମଧେନୁ ଓ ସୁପର କାମଧେନୁ ଗୋଖାଦ୍ୟ ଧରି ପିତାପୁତ୍ର ଗୃହ ଅଭିମୁଖେ ଧାଇଁଲେ । ଘରେ ପହଁଚି ବସ୍ତା ଦେଖିବା ମାତ୍ରେ ପତ୍ନୀ ସୁଭାଷିଣୀ ଦେବୀ ଖୁବ୍ ଖୁସି ହୋଇଗଲେ । କହିଲେ—ଯାହାହେଉ ! ସ୍ୱାଙ୍କୁ ଯେ କହିବ ପୁଅର ବାପ, ଆଉ ବାପର ପୁଅ । ଠିକ୍ ବାପ-ପୁଅ ।

ଖଗେଶ୍ୱରବାବୁ କହିଲେ—ଗ୍ରୁଡ଼ଗଲ ସଖୀ, ସ୍ତ୍ରୀର ସ୍ୱାମୀ ମଧ୍ୟ । ଦେଖ, ଏ ଦୁଇ-ପ୍ରକାର ଖାଦ୍ୟ । ଦୁଇପ୍ରକାର ଗୁଣ । ମାତ୍ର ଆଗେ ଏହାକୁ ଏକାଠି ମିଶାଇ ଖୁଆଇ ପରୀକ୍ଷା କରିବା ।

ସମଗ୍ର ପରିବାର କୁଣ୍ଡେ ଚୋପଣି ପେଟରେ କାମଧେନୁମାର୍କା ଓ ସୁପର କାମଧେନୁମାର୍କା ଗୋଖାଦ୍ୟ ଏକାଠି ଗୋଳାଇ ଗାଈ ପାଖରେ ଥୋଇଲେ । ଗାଈ ବହୁତ ବେଳୁ ଭୋକିଲ ଥିଲା । ସେ ଥରେ କୁଣ୍ଡକୁ ଶୁଙ୍ଘି ଦେଲା । ତା’ପରେ ସତେକି ତାକୁ କିଏ ବିଷ ଗୋଳାଇ ପିଆଉଛି ଓ ସେ ତା ଜାଣିପାରିଛି—ଏହିଭଳି ସେ ମୁହଁଟାକୁ ବୁଲାଇ-ଦେଲା । ସ୍ୱାମୀ ସ୍ତ୍ରୀ ଯେତେ ଚେଷ୍ଟାକଲେ ବି ସେ ଆଉ ନପିଏ । ଗାଈ ବରଂ ରାଗିଯାଇ ସମସ୍ତଙ୍କୁ ଶିଙ୍ଗରେ ଭୁଷିବାକୁ ଚହିଁକିଆସିଲା ।

ଖଗେଶ୍ୱରବାବୁ ଏତେବେଳଯାଏ ନୀରବ ହୋଇନଥିଲେ । ହଠାତ୍ ମୁଣ୍ଡରେ ହାତଦେଇ ବସିପଡ଼ିଲେ । କହିଲେ—ଏ ଗାଈ ଅଲକ୍ଷଣୀ ବୁଝିଲ—ନହେଲେ ବୈଜ୍ଞାନିକ ପ୍ରଣାଳୀରେ ପ୍ରସ୍ତୁତ ଏ ଖାଦ୍ୟ ପୁଣି ତାକୁ ଗନ୍ଧାନ୍ତା ? ହାୟରେ ମନ୍ଦଭାଗ୍ୟ !

ସୁଭାଷିଣୀ ଦେବୀଙ୍କ ମୁଣ୍ଡକୁ ପିତ୍ତ ଉଠିଯାଇଥିଲା । ସେ ରାଗରେ କୁଣ୍ଡଟାଯାକ ଗୋଖାଦ୍ୟ ନଳାରେ ଢାଳିଦେଇ କହିଲେ—ତୁମକୁ ଲାଜ ନାହିଁ କି ତୁମ ବୈଜ୍ଞାନିକ ପ୍ରଣାଳୀକୁ ଲାଜ ନାହିଁ । ତୁମକୁ ତ କହିଥିଲି, ବସ୍ତାଏ ଗ୍ରେକଡ଼ ଆଉ ବିରି ଆଣିବ—ତୁମକୁ ଏ ନବରଙ୍ଗ କରିବାକୁ କିଏ କହିଲା ? ମତେ ବିଜ୍ଞାନ ଦେଖାଉଛ ? ବିଜ୍ଞାନରେ ଗାଈ ଚଳିବେ ? ମୋର ଲକ୍ଷ୍ମୀପରି ଗାଈକୁ ନିନ୍ଦୁଛ ?

ଖଗେଶ୍ୱରବାବୁଙ୍କ ସାନଝିଅ ବି.ଏସ୍‌ସି ରେ ଫିଜିକସ୍ ଅନର୍ସର ଛାତ୍ରୀ । ତା’ର ପାଠର ନିନ୍ଦା ଶୁଣି ସେ ରାଗିଗଲା । କହିଲା—ବୋଉ ! ବିଜ୍ଞାନର ଦୋଷ ଦେ’ନା କହୁଛି । ଏ ଦେଶର ମଣିଷ—ଆଉ ଏ ଦେଶର ଗାଈ—ଏମାନଙ୍କ ଲାଗି ବିଜ୍ଞାନ ହୋଇନାହିଁ, ବୁଝିଲୁ ? ପୃଥିବୀରେ ଭାରତବର୍ଷ—ତହିଁରେ ପୁଣି ଓଡ଼ିଶା !!! ପୁଅ ମଧ୍ୟ ଭଉଣୀ କଥାରେ ସାଯ୍ୟ ହେଲା ।

ଖଗେଶ୍ୱରବାବୁ ଦେଖିଲେ—ଯାହା ତ ହେବାର ହେଲାଣି—ମାତ୍ର ତାଙ୍କରି ଆଗରେ ତାଙ୍କର ପୁଣ୍ୟଭୂମି ଦେଶ ଓ ପ୍ରଦେଶର ନିନ୍ଦା ଚାଲିବ—ଆଉ ସେ ପୁଣି ଏହା ସହିବେ ? ଏମାନେ ସମସ୍ତେ ଗାଈ ଓ ବିଜ୍ଞାନ ଆଦର ପକ୍ଷ ନେଲେଣି । ଦେଶ ପକ୍ଷରେ ସେ ନିଜେ ଠିଆନହେଲେ ନିଅଣ୍ଟ ମାଆଟିଏ ଭଳି ସେ ସ୍ୱାନମାନୀ ହୋଇଯିବ । ତେଣୁ ସେ ଠିଆହୋଇପଡ଼ି ଜଳଦ-ଗମ୍ଭୀର ସ୍ୱରରେ କହିଲେ—ଦେଖ ଦେଖ—କେହି ମୋ ଦେଶର ଦୋଷ ଦଅନାହିଁ କହିଦେଉଛି । ମୁଁ ସବୁ ସହିବି—ମାତ୍ର ମୋ ମାତୃଭୂମିର ନିନ୍ଦା ସହିପାରିବି ନାହିଁ । ଆମେ ସବୁ ଦେଶପ୍ରେମ ଓ ଦେଶଭକ୍ତିରେ ଗଢ଼ାହୋଇଛୁ । ତୁମମାନଙ୍କ ଭଳି ରୁଷ, ଚୀନା, ଆମେରିକାବାଲାଙ୍କ ପାଦଚଟାବାଲା ଆମେ ନୋହୁଁ । ଏ ଦେଶ ଗାନ୍ଧି-

ଗୋପବନ୍ଧୁଙ୍କ ଦେଶ । ସକାଳୁ ରେଡ଼ିଓରେ ଦେଶଭକ୍ତିର ସଙ୍ଗୀତ ଶୁଣିନ ? ଏହା ବୁଦ୍ଧମାନଙ୍କ ଦେଶ; ବିବେକାନନ୍ଦ ଅରବିନ୍ଦଙ୍କ ଦେଶ । ଏହା ମୁନି-ଋଷିଙ୍କର ଦେଶ । ଏ ଯନ୍ତ୍ର ନୁହଁ—ମନ୍ତ୍ରର ପ୍ରତିଷ୍ଠା । ସାମାନ୍ୟ ଯନ୍ତ୍ରବିଜ୍ଞାନ ନାମରେ ତୁମେ ମୋର ପୁଣ୍ୟ ଦେଶକୁ ନିନ୍ଦାକରିବ ? ଏଠି ମନ୍ତ୍ରବଳରେ ପୁଷ୍ପକ ଉଡ଼ୁଥିଲା ଆକାଶରେ । ମନ୍ତ୍ରବଳରେ ହାତେ ଦେଉଳରେ ବାରହାତ ଡିଅଁ ରହିପାରୁଥିଲେ । ମନ୍ତ୍ରବଳରେ ଯୋଗୀମାନେ ପର୍ବତମାନଙ୍କୁ ଆକାଶରେ ଉଡ଼ାଉଥିଲେ । ପଦେ ମନ୍ତ୍ର ବୋଲିଦେଲେ ତମର ପରମାଣୁବୋମା ମଧ୍ୟ ଉଡ଼ିଯିବ—କଣ ବିଜ୍ଞାନ ଦେଖାଉଛ ମତେ ? ଏ ଅଧ୍ୟାତ୍ମ ଦେଶର ବଡ଼ ଗୁଣ ହେଲା—ସହନଶୀଳତା ଓ ଉଦାରତା !

ପତ୍ନୀ ସୁଭାଷିଣୀ ଖଗେଶ୍ୱରବାବୁଙ୍କ କଥା ଶୁଣି ନୈରାଶ୍ୟରେ ହସିଉଠିଲେ—ହଉ ହଉ, ବହୁତ କହିଲଣି—ଆମେ ବି ବହୁତ ସହିଲୁଣି । ତୁମର କାମଧେନୁମାର୍କା ଅଉ ସୁପର କାମଧେନୁମାର୍କା ଗୋଖାଦ୍ୟ କାଲି ସକାଳୁ ଫେରାଇଦେଇ ଆମର ଟଙ୍କା ନେଇଆସ । ଏଣିକି ଯାଅ—କୋଉଁ ମନ୍ତ୍ରବଳରେ ଗାଈକୁ ଖୁଆଇବ ଖୁଆଅ । ଆଉ ଦେଖ—ସେହି ମନ୍ତ୍ର-ବଳରେ ବି ଗାଈଠୁଁ ଦୁଧ ଦୁହିଁବ ।

ଖଗେଶ୍ୱରବାବୁ ତଉଲିଆଟାରେ ଗୋଡ଼କୁ ଝାଡ଼ୁ ଝାଡ଼ୁ କହିଲେ—ସେ କଥା ଅଲଗା—ମାତ୍ର ମୁଁ ଥାଉଁ ଥାଉଁ ବୁଦ୍ଧ, ଶଙ୍କର, ଚୈତନ୍ୟଙ୍କ ଦେଶ ପବିତ୍ର ଭାରତଭୂମିର ନିନ୍ଦା ସହିପାରିବିନି—ମଧୁ, ଗୋପବନ୍ଧୁ, ହରିହରଙ୍କ ଜନ୍ମଭୂମି ଓଡ଼ିଶାର ନିନ୍ଦା ସହିପାରିବିନି ।

□□□

# ଶିକ୍ଷାମନ୍ତ୍ରୀଙ୍କ ସଙ୍କଟ ଓ ସମାଧାନ

ମାନ୍ୟବର ଶିକ୍ଷାମନ୍ତ୍ରୀ ଶ୍ରୀ ରଘୁନାଥ ହରିଚନ୍ଦନ ଯେ ଶିକ୍ଷାମନ୍ତ୍ରୀ ହୋଇ ମୂଳରୁ ଜନ୍ମଗ୍ରହଣ କରିନଥିଲେ—ଏକଥା ସର୍ବବାଦୀସମ୍ମତ । ବରଂ ସେ କବି ହୋଇ ଜନ୍ମିଥିଲେ ବୋଲି ଓଡ଼ିଆ ସାହିତ୍ୟରେ ବଣିକ କରୁଥିବା ("ଭିବେ ବୈଶ୍ୟ ପରିଚ୍ୟେ ମୁଁ ମେଳିଛି ପସରି"—ଅଭିମନ୍ୟୁ) କତିପୟ ଦିଗ୍‌ଗଜ ଓଡ଼ିଆ ଅଧ୍ୟାପକ ଓ ନୋଟ୍‌ବହି ସମାଲୋଚକ-ମାନେ ଦୃଢ଼ମତ କେବଳ ପୋଷଣ କରିନଥିଲେ—ପତ୍ର ପତ୍ରିକାରେ ଓ କବିତା ପ୍ରବେଶ ସହଚର ବହିମାନଙ୍କରେ ମନ୍ତ୍ରୀଙ୍କର ଏହି ଜନ୍ମଗତ ଗୁଣଟିକୁ ସର୍ବସାଧାରଣଙ୍କ ଗୋଚରାର୍ଥେ ପ୍ରକାଶ କରିଥିଲେ । ପ୍ରକାଶ ଥାଉକି, ଶ୍ରୀ ରଘୁନାଥ ହରିଚନ୍ଦନଙ୍କ ବିରଚିତ ଗୋଟିଏ କବିତା ବିଶ୍ୱବିଦ୍ୟାଳୟରେ ପାଠ୍ୟରୂପେ ବିବେଚିତ, ଗୃହୀତ ଓ ପଠିତ ହୋଇଥିଲା ।

କୈଶୋର ଓ ଯୌବନ କାଳରେ ମାନ୍ୟବର ଶିକ୍ଷାମନ୍ତ୍ରୀ ରଘୁନାଥ ହରିଚନ୍ଦନ ବହୁ ପ୍ରେମ-କବିତା ଲେଖି ସତକୁସତ ଖ୍ୟାତି ଅର୍ଜନ କରିଥିଲେ । ବହୁ ପାଠକପାଠିକାଙ୍କ ମୁହଁରେ ବି ଆଜି ପର୍ଯ୍ୟନ୍ତ ତାଙ୍କର ପ୍ରେମକବିତାଗୁଡ଼ିକ ଆବୃତ୍ତି ହେବାର ଆମେ ଶୁଣୁ । ବରଂ ବିଶ୍ୱବିଦ୍ୟାଳୟରେ ପାଠ୍ୟରୂପେ ଗୃହୀତ କବିତାଟି ତାଙ୍କର ଗୋଟିଏ ଅପ୍ରେମ କବିତା; ତେଣୁ ତାହା ପଢ଼ାଇବାକୁ ଓ ପଢ଼ିବାକୁ ବର୍ଷ ବର୍ଷ ଧରି ଅରୁଚି ଲାଗିଆସିଛି । ବିଶ୍ୱବିଦ୍ୟାଳୟର ରୁଚିବନ୍ତ ଓ ଶୁଚିବାୟୁବନ୍ତ କଟ୍‌ଟର ପାଠ୍ୟ ନିର୍ବାଚକମାନେ ତାଙ୍କର ଏପରି ଗୋଟିଏ କବିତା ପିଲାଙ୍କ ପଢ଼ିବାପାଇଁ ଓ ଅଧ୍ୟାପକଙ୍କ ପଢ଼ାଇବାପାଇଁ ବାଛିଲେ—ଯାହାକି ଦେଶପ୍ରେମରୁ କିଛି, ବ୍ରହ୍ମଚର୍ଯ୍ୟ ବ୍ୟାପାରରୁ କିଛି, ପରାତ୍ପର ପରମେଶ୍ୱରଙ୍କ ବ୍ୟାପାରରୁ କିଛି ଓ ଗୃହୀଜୀବନରେ ଶୃଙ୍ଖଳାରୁ କିଛି—ଏପରି ସବୁ କିଛି ଭାବ ମିଶ୍ରିତ ଏକ ନିରାମିଷ ବିରିଆନି କବିତା ହୋଇ ପରିବେଷିତ ହେଲା; ମାତ୍ର ସେହି ବିରିଆନିରେ ସ୍ନେହ ଜାତୀୟ ପଦାର୍ଥରୁ ଟୋପାଏ ମଧ୍ୟ ପଡ଼ିନଥିଲା ।

ପ୍ରକୃତରେ ରଘୁନାଥ ହରିଚନ୍ଦନ ଥିଲେ ସ୍ନେହ, ପ୍ରେମ, ପ୍ରଣୟ, ପରିଣୟ ଇତ୍ୟାଦିର କବି । ଏହି ତାଙ୍କର ସ୍ନେହ, ପ୍ରେମ, ପ୍ରଣୟାଦି ଅନୁଭୂତି । ଅବଶ୍ୟ ତାଙ୍କର ତ୍ରିଶ ବର୍ଷ ପରି କବିତାଗୁଡ଼ିକ ସଚ୍ଚିଦାନନ୍ଦ ରସଘନମୂର୍ତ୍ତି ଭଗବାନ ଶ୍ରୀକୃଷ୍ଣ ଓ ପରମଭାବମୟୀ ପରମାହ୍ଲାଦୈକମୟୀ ଶ୍ରୀମତୀ ରାଧାଠାକୁରାଣୀଙ୍କ ଆଡ଼କୁ ମୁହାଁଇଯାଇ ପ୍ରେମଭକ୍ତିରସରେ ପରିଣତ ହୋଇଗଲା । ସେ ଯାହାହେଲେ ବି ରଘୁନାଥ ଥିଲେ ପ୍ରକୃତରେ ପ୍ରେମ-ପ୍ରଣୟର କବି । କିନ୍ତୁ ତାଙ୍କର ଜାତ ପ୍ରତିଦ୍ୱନ୍ଦ୍ୱୀ ବିରୋଧୀଦଳର ପରାଜିତ ନେତା ଶ୍ରୀଲିଙ୍ଗେଶ୍ୱର

ପରମାଣିକ; ଯେ କି ଦିନେ 'ଗ୍ରୀଷ୍ମଶ୍ରୀମାଡ଼' ପତ୍ରିକାର ସ୍ୱନାମଧନ୍ୟ ସମ୍ପାଦକ ଥିଲେ ଓ ସେଥିରେ ବିପ୍ଳବାତ୍ମକ କବିତା ଲେଖି ସମାଜରେ ଚହଳ ପକାଇ ଦେଇଥିଲେ—ସେ କହନ୍ତି, ପ୍ରେମକବିତା ଲେଖିବା ସେମିତି କିଛି କଷ୍ଟକର କଥା ନୁହେଁ । ଗୋଟେ ଯାହିତାହି ସ୍ତ୍ରୀଲୋକ ପାଲିରେ ଯଦି କିଛିଦିନ ପଡ଼ିଯିବ, ତେବେ ଦିନକୁ ଏକ ଡଜନ ଫାଷ୍ଟକ୍ଲାସ ପ୍ରେମକବିତା ଅକ୍ଲେଶରେ ଲେଖିଦେଇହେବ । ଆଚ୍ଛା ! ରଘୁ ହରିଚନ୍ଦନ ଲେଖୁ ଦେଖି ଗୋଟେ ବିପ୍ଳବାତ୍ମକ କବିତା, ଦେଖିବା, ସେ କେମିତି କବି ବୋଲିଉଛି ! ଧାଡ଼ିଏ ବିପ୍ଳବ କବିତା ଲେଖିଲାବେଳକୁ ଯଦି ମାଠିଆଏ ଝାଳ ତା' ଦେହରୁ ବୋହି ନଯାଇଛି ! ବିପ୍ଳବ-କବିତା ଏତେ ସହଜ ନୁହେଁ ବାବା ! କୃଷକ ଶ୍ରମିକଙ୍କ ସ୍ୱାର୍ଥ ରଖି ଲେଖା ହେବ, ପୁଞ୍ଜିପତିଙ୍କ ବିରୁଦ୍ଧରେ ସଂଗ୍ରାମର ବାଣୀ ଉଦ୍‌ଗିରଣ କରିବାକୁ ହେବ, ଶ୍ରମ ଓ ସଂଗ୍ରାମର ଝାଳ ଓ ଲହୁ ନ ବୋହିଲେ କବିତା କଣ ? ବୁର୍ଜୋଆ—ବୁର୍ଜୋଆ । ଦେଶରେ ଯେତେବେଳେ ଘୋର ଅଭାବ, ଅନଟନ, ଅତ୍ୟାଚାର, ଲୁଣ୍ଠନ, ଦରବୃଦ୍ଧି, ଅସନ୍ତୋଷ, ଧପ୍‌ପାବାଜି ଓ ବ୍ଲେକ୍-ବଜାରରେ ସାଧାରଣ ଜନତା ପେଷିହୋଇଯାଉଛି—ସେତେବେଳେ ଗୋଟେ ଯାଚ୍ଛାତାଇ ସ୍ତ୍ରୀଲୋକର କେଶ, ନଖ, ସ୍ତନ, ନିତମ୍ବ ବର୍ଣ୍ଣନା କରି; ବୁକୁ, ହୃଦୟ, ଆତ୍ମା ଆଦି ଲମ୍ବାଲମ୍ବା କଥା କହି; ଶ୍ୱାସ, ପ୍ରଶ୍ୱାସ, ହିକ୍‌କା, ହାଇ ଆଦି ମାରିବା ଗୋଟାଏ ବୁର୍ଜୋଆ ବିଳାସ । ରଘୁ ହରିଚନ୍ଦନ ଯେତେ ସମାଜବାଦ—ସମାଜବାଦ ହେଉ ପଛେ ଅସଲରେ ସେଇଟା ଗୋଟାଏ ପେଟି-ବୁର୍ଜୋଆ । 'ଗ୍ରୀଷ୍ମଶ୍ରୀମାଡ଼' ପତ୍ରିକା ପଢ଼ । ପୃଷ୍ଠା ପରେ ପୃଷ୍ଠା ମାସ ମାସ ଧରି ମୁଁ ସେ ରାସ୍କେଲଗୁଡ଼ାକର ଛଦ୍ମରୂପ ଖୋଲି ଦେଖାଇଦେଇଛି ।

ମାତ୍ର କିଏ ଆଉ କଣ କରିବ ? ଦେଶବାସୀ ଲଙ୍କେଶ୍ୱର ପରମାଣିକଙ୍କର 'ଗ୍ରୀଷ୍ମଶ୍ରୀ-ମାଡ଼' ପତ୍ରିକା ହଜାର ହଜାର ସଂଖ୍ୟାରେ କିଣିକରି ପଢ଼ିଲେ; ମାତ୍ର ଶେଷରେ ଭୋଟ ଦେଲେ ପ୍ରେମକବିତା ଲେଖୁଥିବା ରଘୁନାଥ ହରିଚନ୍ଦନଙ୍କୁ ।

ଏଣେ ବ୍ୟାପାରଟିକୁ ଗମ୍ଭୀର ଓ ସୂକ୍ଷ୍ମ ଭାବେ ବିଗ୍ଭର କଲେ ଆମେ ବୁଝିବା—ଯେ ରଘୁନାଥ ହରିଚନ୍ଦନଙ୍କ ଚେହେରାରେ ମଧ୍ୟ ଗୋଟାଏ ନୟନାଭିରାମ ବୈଶିଷ୍ଟ୍ୟ ଥିଲା । ତାଙ୍କର ରମଣୀୟ ଗ୍ଭହାଣି ଓ ମୃଦୁମଧୁର ସ୍ମିତହାସ୍ୟରେ ସତକୁସତ କିଛି ଯାଦୁ ଥିଲା । ତାଙ୍କୁ ଦେଖିଲେ ମନେ ହେବ, ଏ ଲୋକ ଜନ୍ମରୁ କବି ହୋଇ ଜନ୍ମିଛି କି ନାହିଁ କେଜାଣି, ତାହା ଓଡ଼ିଆ ସହଚର-ସମାଲୋଚକ ଟୀକାକାର ଅଧ୍ୟାପକମାନେ କହିବେ; ମାତ୍ର ଏ ଲୋକ ଜନ୍ମରୁ ପ୍ରେମିକ ହୋଇ ଜନ୍ମିଛି ନିଶ୍ଚୟ । ଏ କେବଳ ନାରୀ-ଚିତ୍ତ-ଚୋର ନୁହେଁ । ଦେଶର ଲକ୍ଷ ଲକ୍ଷ ଭୋଟରମାନଙ୍କ ଚିତ୍ତକୁ ମଧ୍ୟ ଏହି ରମଣୀୟ ରଘୁନାଥୀ ଗ୍ଭହାଣି ଓ ମୃଦୁମାଦକ ହସଦ୍ୱାରା ହରଣ କରିନେବା ଏହି ପୁଂସ-ପୁଙ୍ଗବଙ୍କ ପକ୍ଷରେ କାଣ୍ଟିଉ ମାତ୍ର ।

ସତକୁସତ ତାହାହିଁ ହେଲା । ଭୋଟରମାନେ ତାଙ୍କୁ ଏମ୍. ଏଲ୍. ଏ. କରିଦେଲେ । ରଘୁନାଥବାବୁ ସଂସ୍କୃତରେ ଅନର୍ସ ଓ ଇଂରାଜୀରେ ଏମ୍. ଏ. ପାସ୍ କରି ଓକିଲାତି ମଧ୍ୟ

ପଢ଼ିଥିଲେ । ଲୋକେ ଭାବିଥିଲେ, ଏଭଳି ପଣ୍ଡିତ କବି ଅଧ୍ୟାପକ ହେଲେ ବିଶ୍ୱବିଦ୍ୟାଳୟର ମୁଖ ଉଜ୍ଜ୍ୱଳ କରିବେ । ମାତ୍ର ରଘୁନାଥବାବୁ କେମିତି କେଜାଣି ଓକିଲ ହେଲେ । ଚାକିରି ପ୍ରତି ତାଙ୍କର ଘୃଣା ଥିଲା । ସ୍ୱାଧୀନତା ସଂଗ୍ରାମରେ ଜେଲ ଯାଇଥିବା ହେତୁ ପରାଧୀନତା ପ୍ରତି ତାଙ୍କର ପ୍ରଚଣ୍ଡ ଘୃଣା ଥିଲା । ଓକିଲାତିରେ ରମଣୀୟ ଚାତୁରୀ ଓ ମୃଦୁମାଦକ ହସ କାମ ଦିଏ କି ନାହିଁ କେଜାଣି—ମାତ୍ର ଦେଖାଗଲା ରଘୁନାଥବାବୁ ଆଠ ଦଶବର୍ଷ ଭିତରେ ସହର ଭିତରେ ହୋଇଉଠିଲେ ଏକ ନାମଜାଦା ସିଭିଲ୍ ଆଡଭୋକେଟ । ସହର ଓ ସଦର ଲୋକମାନଙ୍କରେ ସେ ମଧ୍ୟ ଖୁବ୍ ଲୋକପ୍ରିୟ ହୋଇଉଠିଲେ । କେବଳ ସିଭିଲ୍ କେସ୍ ବ୍ୟତୀତ ସେ ଫଉଜଦାରୀ ପାଖ ପଶୁନଥିଲେ ।

ତା'ପରେ ଦେଶରେ ରାଜନୀତିକ ସଙ୍କଟ ଦେଖାଗଲା । ଦଳାଦଳି, ଭଙ୍ଗାଭଙ୍ଗି, ଶରିଚର, ଫଡ଼ାଫଡ଼ି, ଫଟାଫଟି, ମିଶାମିଶି, ଫେଡ଼ାଫେଡ଼ି, ଗୁଣାଗୁଣି, ହରିହର ଆଦି ବ୍ୟାପାର ଏମିତି ଚାଲିଲା ଯେ କିଏ କୋଉଠି କିଣ, କପଟ, କାହିଁକି, ଆଜି ଆଉ କିଛି ଜଣାଗଲାନାହିଁ । କାଲି ରାତିର ଶତ୍ରୁମାନେ ଆଜି ସକାଳୁ ମିତ୍ର ଓ ଆଜି ସକାଳର ମିତ୍ରମାନେ ଆଜି ସନ୍ଧ୍ୟାକୁ ଶତ୍ରୁ ରୂପେ ଉଆଁ ଉଠେଇଁ ଦେଲେ । ରାଜନୀତିକ ଗଗନ ଧୂଳି, ଧୂଆଁ ଓ କୁହୁଡ଼ିରେ ଆଚ୍ଛନ୍ନ ହୋଇଗଲା । ଏହି କୁହୁଡ଼ି ଭିତରୁ କୌଣସି ପ୍ରକାରେ ଦୃଶ୍ୟମାନ ଏକ ମୁଖ୍ୟ ରାଜନୀତିକ-ଦଳର କାରପଟଦାର ଓ ନେତାମାନେ ଲୋକପ୍ରିୟ ଓ ଜଞ୍ଜାଳ ଲାଗିନଥିବା କେତେକ ନୂତନ ବ୍ୟକ୍ତିଙ୍କୁ ନିଜ ଦଳକୁ ଆଣିବା ଚେଷ୍ଟାରେ ଇତସ୍ତତଃ ବୁଲୁ ବୁଲୁ ଦିନେ ଯାଇ ପହଞ୍ଚିଲେ ଖ୍ୟାତନାମା ପ୍ରେମିକ କବି ଓ ଲୋକପ୍ରିୟ ଆଡଭୋକେଟ୍ ରଘୁନାଥ ହରିଚନ୍ଦନଙ୍କ ପାଖରେ ଏବଂ ତାଙ୍କୁ ଜବରଦସ୍ତି ନିଜ ଦଳରେ ମିଶାଇଲେ । କହିଲେ—ତୁମେ ଜଣେ ଦରଦୀ କବି । ଦେଶ ରସାତଳକୁ ଯାଉଛି । ଏବେ ତାକୁ ତୋଳି ଧର । ନିଅ ତାର ଦାୟିତ୍ୱ । ତୁମେ ନ ଆସିଲେ—ଆମର ସଂଖ୍ୟା ପୂରିବ ନାହିଁ ।

ରଘୁନାଥବାବୁ ମୃଦୁ ମଧୁର ହସରେ ସାମାନ୍ୟ ସମ୍ମତି ପ୍ରକାଶକରି କହିଲେ—ଯଦି ମତେ ରାଜନୀତି ଦଳରେ ଭର୍ତ୍ତି କରୁଛ—ତେବେ ମୋର ଦୁଇଟି ସର୍ତ୍ତ ପାଳନ କରିବ ତ ? କାରପଟଦାରମାନେ କହିଲେ—ଆମେ ମାନିବୁ—କହନ୍ତୁ, ସର୍ତ୍ତ କଣ ?

ରଘୁନାଥ ବାବୁ କହିଲେ—ପ୍ରେମକବିତା ଲେଖିବାଲାଗି ଅନୁମତି ଦେବେ ତ ?

କାରପଟଦାର କହିଲେ—ପ୍ରେମକବିତା ଲେଖିବା କଥା କାହିଁକି ପଚାରୁଛ—ଆମେ ଆପଣଙ୍କୁ ଯେତେ ଇଚ୍ଛା ସେତେ ପ୍ରେମ କରିବାକୁ ମଧ୍ୟ ଛାଡ଼ିଦେବୁ । ଆମର ମୁଖ୍ୟ ନୀତି କେବଳ ସମାଜବାଦ । ବ୍ୟକ୍ତିଗତ ବ୍ୟାପାର ଓ ଅଭିରୁଚି ସଙ୍ଗେ ଆମର ସମ୍ପର୍କ ନାହିଁ । କହନ୍ତୁ—ଦ୍ୱିତୀୟ ସର୍ତ୍ତଟି କଣ ?

ମୁଁ ପୋଲିସ, ବ୍ୟବସାୟୀ ବା କଣ୍ଟ୍ରାକ୍ଟର ଆଦିଙ୍କ ସମ୍ପର୍କରେ ଯେପରି ନଆସେ, ତାର ବନ୍ଦୋବସ୍ତ କରିବେ ତ ? ଦେଶର କେବଳ ଗୁଣୀ, ଜ୍ଞାନୀମାନଙ୍କ ସଙ୍ଗେ ମୁଁ କାରବାର କରିବାକୁ ଚାହେଁ ।

କାରପଟଦାର ଅତି ଆହ୍ଲାଦ ଉଲ୍ଲାସରେ କହିଲେ—ଏହି ଜାତୀୟ ଘଡ଼ିକା ଛୁଇଁ ଆମେ ପ୍ରତିଜ୍ଞା କରୁଛୁ—ଆପଣଙ୍କୁ ଆମେ କଦାପି ନ ଦେଇ ବିଭାଗ, ସପ୍ଲାଇ, ପି. ଡବ୍ଲ୍ୟୁ. ଡି. ( P. W. D. ) ବା ଜଙ୍ଗଲ ବିଭାଗ ଦେବୁନାହିଁ । ଦେଶର ସମଗ୍ର ଶିକ୍ଷା ବିଭାଗଟି ଆମେ ଆପଣଙ୍କର ଶ୍ରୀଚରଣତଳେ ସମର୍ପି ଦେବୁ । ଆପଣ ନିଶ୍ଚିନ୍ତ ଥା'ନ୍ତୁ । ଆପଣ କେବଳ ସ୍କୁଲ କଲେଜର ସାଂସ୍କୃତିକ ଉତ୍ସବ ଓ ପୁରସ୍କାର ବିତରଣୀ ସଭାରେ ମୁଖ୍ୟ ଅତିଥି ହୋଇ ବୁଲିବେ ଓ ଆପଣଙ୍କର ସାତ୍ତ୍ୱିକ ପ୍ରତିଭାର ପ୍ରେରଣାଦାୟିନୀ ସୌଭାଗ୍ୟବତୀ ଧର୍ମପତ୍ନୀ ଶ୍ରୀମତୀ ହରିଚନ୍ଦନ କୋମଳମତି ଜ୍ଞାନପିପାସୁ ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ବିତରଣ କରି ଉତ୍ସାହ ପ୍ରଦାନ କରିବେ । ଏହିଥିରେ ପାଞ୍ଚବର୍ଷ ପାଣିପରି ବହିଯିବ । ମନେହେବ—ମନ୍ତ୍ରୀପଦ ଏକ ସୁନେଲି ସ୍ୱପ୍ନ ।

ଅଗତ୍ୟା ହସି ହସି ରଘୁନାଥ ହରିଚନ୍ଦନ ନିର୍ବାଚନରେ ଯୋଗଦେଲେ । ଜୟଯୁକ୍ତ ହେଲେ ବିପୁଳ ଭୋଟରେ ଓ ଶିକ୍ଷା ସଂସ୍କୃତି ବିଭାଗର ଦାୟିତ୍ୱ ଗ୍ରହଣ କଲେ । ମନ୍ତ୍ରୀପଦ ପାଇବାର ଅନତିଦିନ ପରେ ତାଙ୍କୁ ସତକୁ ସତ ବିଭିନ୍ନ କବି, ସାହିତ୍ୟିକ ଓ ବୈଜ୍ଞାନିକ-ମାନଙ୍କ ସଭା ଉଦ୍‌ଘାଟନ କରିବାକୁ ନିମନ୍ତ୍ରଣ ଆସିଲା । ସେ ମଧ୍ୟ ସେଇ ସଭାମାନଙ୍କରେ ସ୍ୱରଚିତ ନୂତନ ପ୍ରେମ-କବିତା କେତୋଟି ଆବୃତ୍ତି କରି ଖୁବ୍ କରତାଳି ଓ ଫୁଲମାଳମାନ ପାଇଲେ । ଅତଃପର କେତୋଟି ସ୍କୁଲ, କଲେଜର ବାର୍ଷିକ ଉତ୍ସବ ଓ ପୁରସ୍କାର ବିତରଣୀ ସଭାରେ ମାନ୍ୟବର ରଘୁନାଥଙ୍କୁ ମୁଖ୍ୟଅତିଥି ଆସନ ଅଲଂକୃତ କରିବାର ସୁଯୋଗ ଆସିଲା । ସେଥିରେ ସେ ଛାତ୍ରଛାତ୍ରୀ, ଶିକ୍ଷକ ଓ ଅଧ୍ୟାପକମାନଙ୍କଠାରୁ ପ୍ରଚୁର ପ୍ରଶଂସା ଓ ସ୍ତୁତି-ଗୀତାଦି ଶୁଣି ଉତ୍ଫୁଲ୍ଲିତ ହେଲେ । କେତେକ ଓଡ଼ିଆ ଅଧ୍ୟାପକ ଓ କତିପୟ ସଂସ୍କୃତ ପଣ୍ଡିତ ନିଜ ଲିଖିତ ଅଭିନନ୍ଦନପତ୍ର ଓ କବିତାଦିରେ ଶିକ୍ଷାମନ୍ତ୍ରୀଙ୍କୁ ବୁଧବୋଧକ ଓ ଅଜ୍ଞବୋଧକ ବୋଲି ବର୍ଣ୍ଣନା କଲେ । କେହି କେହି ତାଙ୍କର ହୃଦୟକୁ "ବୁଧହଂସ-କେଳିସର" ରୂପେ ଆଖ୍ୟାତ କଲେ । କେହି କେହି ତାଙ୍କୁ ଶିକ୍ଷା ବିଭାଗର ଭାଗ୍ୟବିଧାତା ରୂପେ ଆବାହନ କଲେ । ମାନ୍ୟବର ଶିକ୍ଷାମନ୍ତ୍ରୀ ରଘୁନାଥ ହରିଚନ୍ଦନ ତୋଷାମଦୀକୁ ଘୃଣା କରନ୍ତି ନାହିଁ । ସେ କହନ୍ତି—ତୋଷାମଦୀରେ ଭୁଲିଯିବା ଉଚିତ ନୁହେଁ । କିନ୍ତୁ ତୋଷାମଦୀ ଗୋଟିଏ କଳା । ତାକୁ ପ୍ରକାଶ କରିବାର ମଧ୍ୟ କେତେକ ବୈଜ୍ଞାନିକ ପଦ୍ଧତି ରହିଛି । କରିଜାଣିଲେ ତୋଷାମଦୀ ଗୋଟିଏ ସଙ୍ଗୀତଭଳି ଶ୍ରବଣ, ପ୍ରୀତିକର ଓ ଚିତ୍ତଦ୍ରବକାରୀ ହୋଇପାରେ । ଯଥାର୍ଥ ପ୍ରେମ ମଧ୍ୟ ଏହି ତୋଷାମଦୀ ଉପରେ ନିର୍ଭର କରେ । ମାତ୍ର ତୋଷାମଦୀ ଉଦ୍ଦେଶ୍ୟମୂଳକ ହେଲେ ବ୍ୟର୍ଥ ଓ ବିରକ୍ତିକର ହୋଇଉଠେ ।

ଥରେ ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗଦ୍ୱାରା ଆୟୋଜିତ ଏକ ନୂତନ ପ୍ରକାଶିତ ପୁସ୍ତକର ଉଦ୍‌ଘାଟନ ଉତ୍ସବରେ ତାଙ୍କୁ ଉଦ୍‌ଘାଟକ ରୂପେ ଯୋଗଦେବାକୁ ପଡ଼ିଥିଲା । ସେହି ପୁସ୍ତକର ଲେଖକ ଜଣେ ଖ୍ୟାତନାମା ଓଡ଼ିଆ ଅଧ୍ୟାପକ ତାଙ୍କ ସ୍ତୁତି-ଭାଷଣରେ ମାନ୍ୟବର ଶିକ୍ଷାମନ୍ତ୍ରୀଙ୍କୁ ବେଦର ଉଦ୍ଧାରକର୍ତ୍ତା ଓ ରକ୍ଷାକର୍ତ୍ତା ବୋଲି କହିଲାପରେ ସେ

ପ୍ରଶ୍ନ କଲେ—ଅଧ୍ୟାପକ ମହାଶୟ ! ଆମ୍ଭେ କେଉଁ ବେଦର ଉଦ୍ଧାର କରିବା ଓ ରକ୍ଷା-କରିବା ? ଚତୁର୍ବେଦ ତ ବର୍ତ୍ତମାନ ବହୁଭାବେ ଉଦ୍ଧୃତ ଓ ସୁରକ୍ଷିତ ରହିଅଛି ।''

କୃତବିଦ୍ୟ ଖ୍ୟାତନାମା ଓଡ଼ିଆ ଗବେଷକ ଅଧ୍ୟାପକ ମହୋଦୟ କୃତାର୍ଥ କଣ୍ଠରେ କହିଲେ—ମାନ୍ୟବର ମନ୍ତ୍ରୀ ମହୋଦୟ ! ଅଧୁନା ମୋ ଦ୍ୱାରା ସଦ୍ୟ ପ୍ରକାଶିତ 'ଶିଶୁବେଦ' ନାମକ ନୂତନ ବେଦର ଉଦ୍ଧାର, ପ୍ରତିଷ୍ଠା ଓ ସୁରକ୍ଷା ଲାଗି ଦାୟୀ ହେଉ-ଅଛନ୍ତି । ସଦ୍ୟ ପ୍ରକାଶିତ ଏହି ଶିଶୁବେଦ ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଆ ଜାତିର ପ୍ରାଣ ଓ ଅସ୍ମିତାକୁ ରକ୍ଷା କରିଆସୁଥିଲା । ଏହି ବହୁକାଳାବଧି ଲୁପ୍ତ ଓ ସଦ୍ୟ ଆବିଷ୍କୃତ ଶିଶୁବେଦରେ ଓଡ଼ିଆ ଜାତିର ଜ୍ଞାନ-ବିଜ୍ଞାନର ଚରମ ପରାକାଷ୍ଠା ନିହିତ ରହିଅଛି ।

ମାନ୍ୟବର ମନ୍ତ୍ରୀ ତାଙ୍କର ସ୍ୱଭାବସୁଲଭ ସ୍ମିତହାସ୍ୟ ପ୍ରକାଶ କରି କହିଲେ—ଆପଣ କଣ କହିବାକୁ ଚାହାନ୍ତି ଯେ ଓଡ଼ିଆ ଜାତି ପୂର୍ବେ ଋକ୍, ସାମ, ଯଜୁଃ ଓ ଅଥର୍ବାଦି ବେଦ ଓ ଈଶ, କେନ, କଠାଦି ଉପନିଷଦମାନ ନ ପଢ଼ି ଏହି ଶିଶୁବେଦରୁ ହିଁ ସମସ୍ତ କଳା, ବିଜ୍ଞାନ ଓ ଆତ୍ମଦର୍ଶନର ଉତ୍ସ ପାଉଥିଲା ? କୋଣାର୍କ, ଭୁବନେଶ୍ୱର, ପୁରୀ ଆଦି ମନ୍ଦିରମାନ କଣ ଏହି ଶିଶୁବେଦ ପଠନର ଫଳ ?

କୃତବିଦ୍ୟ ଗବେଷକ ଅଧ୍ୟାପକ କୃତାର୍ଥ ହୋଇ ବିନୀତ କଣ୍ଠରେ କହିଲେ—ମାନ୍ୟବର ଯାହା ଭାବୁଛନ୍ତି ତାହା ହିଁ ଯଥାର୍ଥ । ଏହି ଶିଶୁବେଦ ହିଁ ସବୁ ବେଦ, ଉପନିଷଦ, ସ୍ମୃତି, ସଂହିତା ଓ ପୁରାଣାଦିର ମୂଳ । ଏଥିରେ ଆୟୁର୍ବେଦ, ଧନୁର୍ବେଦ ଓ ରାଜନୀତି, ଅର୍ଥନୀତି ଆଦିର ମୂଳବୀଜମାନ ମଧ୍ୟ ରହିଛନ୍ତି । ଏ ବେଦ ଭାରି ଟାଣ ଆଜ୍ଞା—ଯିଏ ଏହାକୁ ସାଧିଲେ—ସିଏ ପରମ ପାଇବ ।

ମାନ୍ୟବର ଶିକ୍ଷାମନ୍ତ୍ରୀ ସବୁ ଶୁଣିସାରି ଟିକିଏ ହସିଲେ । ଅତଃପର 'ଶିଶୁବେଦ'ର ଯଥାଯଥ ବ୍ୟବସ୍ଥା କରି କହିଲେ—ସମଗ୍ର ପୃଥିବୀ ବୟସ୍କ ବେଦକୁ ନେଇ ମାତିଥିବା ବେଳେ, ଓଡ଼ିଆ ଜାତି ଯଦି ଶିଶୁବେଦକୁ ନେଇ ନାଚିବ ବୋଲି ବିଜ୍ଞ ଅଧ୍ୟାପକମାନଙ୍କ ଇଚ୍ଛା—ତେବେ ଆମ୍ଭର ଆପତ୍ତି କି ସକାଶେ ହେବ ? ବାସ୍ତବିକ ଶିଶୁ ହେବାର ମଣିଷର ଚରମ ଲକ୍ଷ୍ୟ । ଏଣିକି ଓଡ଼ିଆ ଜାତିର ବୁଦ୍ଧି ଓ ହୃଦୟ ଚିରନ୍ତନ ଶୈଶବାବସ୍ଥାରେ ରହିବ ବୋଲି ଯଦି ଆପଣମାନଙ୍କ ଭଳି ବିଜ୍ଞ ବୁଧମାନେ ଚାହୁଁଛନ୍ତି—ତେବେ ଆମ୍ଭେ ଆଉ କେଉଁ ଯୁକ୍ତିରେ ତାକୁ ପ୍ରତିବାଦ କରିବା ? ଆମେ ଚାହୁଁ ସମାଜର ମଙ୍ଗଳ ।

କୃତବିଦ୍ୟ ଗବେଷକ ଅଧ୍ୟାପକ ପରମ ଉତ୍ସାହ ଓ କୃତକୃତ୍ୟ ଭାବ ଦେଖାଇ ହାତ ମଳିମଳି କହିଲେ—ଆଜ୍ଞା, ଆଜ୍ଞା ! ସମାଜବାଦର ବୀଜାଙ୍ଗୀ ମଧ୍ୟ ଏହି ଶିଶୁବେଦରେ ରହିଛି । ଖାଲି ତାକୁ ସାଧିଲେ ହେଲା । ଯିଏ ତାକୁ ସାଧି ନପାରି ଓଡ଼ିଆ ଜାତି ଏମିତି ଧେଡ଼ିଆ ହେଲାଣି । ସ୍ୱୟଂ ସାରଳାଦାସ ଏହି ଶିଶୁବେଦକୁ ସାଧିଥିଲେ ଆଜ୍ଞା— ! ଯିଏ ତାକୁ ସାଧିବାରୁ ଅଠରଖଣ୍ଡ ଭାରତ ଲେଖିଲେ । ସାରଳାଦାସ ନିଜେ କହିଛନ୍ତି —''ଶିଶୁ ବୁଦ୍ଧି ମୋହର ବୟସ ଅଳପଟି !''

ଶିଶୁବେଦୀ ଅଧ୍ୟାପକଙ୍କ ଚେହେରା ଆଡ଼କୁ ଦୃଷ୍ଟିନିକ୍ଷେପ କରି ମାନ୍ୟବର ମନ୍ତ୍ରୀ ପୁଣି ହସି ହସି ମୁଣ୍ଡ ଟୁଙ୍କାରିଲେ । ସ୍ୱଗତେ ଭାବିଲେ—ଏସବୁ ଶିକ୍ଷାବିଭାଗ ବର୍ତ୍ତମାନ ଏବଂବିଧ ଶିଶୁ ବୃଦ୍ଧ ବାଲଖିଲ୍ୟ ଅଧ୍ୟାପକମାନଙ୍କ ଦ୍ୱାରା ଅଧ୍ୟୁଷିତ ହୋଇଗଲାଣି ।

ଏହି ସମୟରେ କେତେକ ଆଧୁନିକ ଯୁବ ଅଧ୍ୟାପକ (ଓଡ଼ିଆ ବିଭାଗର) ସଭାରେ ଦଣ୍ଡାୟମାନ ହୋଇ ଉଚ୍ଚସ୍ୱରରେ କହିଲେ—ମାନ୍ୟବର ଶିକ୍ଷାମନ୍ତ୍ରୀ ଜଣେ ବିଶିଷ୍ଟ କବି ଓ ସାହିତ୍ୟିକ । ଆମ୍ଭେମାନେ ତାଙ୍କର ବିଜ୍ଞ ବିଚାରକୁ ଏହି କଥାଟି ଜଣାଉଛୁ ।

ମନ୍ତ୍ରୀ ହାତ ଟେକି କହିଲେ—କୋଉ କଥା ?

ଆଜ୍ଞା ! ଶିଶୁବେଦ ଯଥାର୍ଥରେ ଆଉ ନାହିଁ; ପୂର୍ବରେ ହୁଏତ ଥିଲା । ଏ ଯେଉଁ ଶିଶୁବେଦ ଆପଣ ଉଦ୍‌ଘାଟନ କଲେ ତାହା ସବୁ ବ୍ଲାକ୍—ଜାଲ୍‌ଜାଲିଆତି ।

ମନ୍ତ୍ରୀଙ୍କ ରମଣୀୟ ଦୃଷ୍ଟି କିଞ୍ଚିତ୍ ବକ୍ର ହୋଇଗଲା । ସେ କହିଲେ—ଏ ଅଭିଯୋଗ କେମନ୍ତ ? ପ୍ରମାଣ କଣ ? ବେଦରେ ବି ଜାଲ ଭେଜାଲ ?

ଜଣେ ଆଧୁନିକ ଯୁବକ ସଙ୍ଗେ ସଙ୍ଗେ ଠିଆହୋଇପଡ଼ି କହିଲେ—ଆଜ୍ଞା ! ଆପଣ ଓ ଆମ୍ଭେମାନେ ଦିନେ ଯେ ଶିଶୁ ଥିଲେ ଏହା ଚିରାଚରିତ ଭଳି ସତ୍ୟ । ମାତ୍ର ଆମ୍ଭମାନଙ୍କର ଶୈଶବାବସ୍ଥା ଆଉ ଅଛି କି ? ତାହା କୋଉଦିନୁଁ ଲୁପ୍ତ ହେଲାଣି । ସେହିପରି ବେଦମାନେ ନିଶ୍ଚୟ ଦିନେ ଶିଶୁ ଥିଲେ—ଆମ୍ଭେମାନେ ମନା କରୁନାହୁଁ । ମାତ୍ର ଚତୁର୍ବେଦ ଯେ କେଉଁ କାଳରୁ ପରିଣତ ବୟସକୁ ଆସି ବର୍ତ୍ତମାନ ଚିରନ୍ତନ ବୃଦ୍ଧାବସ୍ଥାରେ ଅବସ୍ଥାନ କଲେଣି—ସେମାନଙ୍କର ଶିଶୁ ଅବସ୍ଥା ଆଉ କୋଉଠୁ ଆସିବ ? ଉକ୍ତ ଅଧ୍ୟାପକ ବର୍ତ୍ତମାନ ସମଗ୍ର ଜାତିକୁ ଓ ତାର ଶିକ୍ଷାମନ୍ତ୍ରୀଙ୍କୁ ମଧ୍ୟ ଭୁଆଁ ବୁଲେଇବାକୁ ଚେଷ୍ଟା କରୁଛନ୍ତି । ତେଣୁ ସାଧୁ ସାବଧାନ ।

ମାନ୍ୟବର ଶିକ୍ଷାମନ୍ତ୍ରୀ ଜଣେ ଜାତ-କବି ନିଶ୍ଚୟ । ମାତ୍ର ବିଶ୍ୱବିଦ୍ୟାଳୟର ଏହି ସାହିତ୍ୟ ଅଧ୍ୟାପକମାନଙ୍କର ହଟଚମଟ ଗବେଷଣାରେ ସେ ତ୍ରସ୍ତ ଓ କିଂକର୍ତ୍ତବ୍ୟବିମୂଢ଼ ବୋଧ କଲେ । ସେ କଣ ଉତ୍ତର ଦେବେ ଭାବୁଛନ୍ତି—ଏହି ସମୟରେ ତାଙ୍କର ଷ୍ଟେନୋ ହଠାତ୍ ତାଙ୍କ କାନପାଖେ ଫିସ୍ ଫିସ୍ କରି କହିଲେ—ସାର୍ ! ମହାଗଣ୍ଡଗୋଳ ଉପସ୍ଥିତ । ବିଶ୍ୱବିଦ୍ୟାଳୟର କେତେକ ଛାତ୍ର କଳାପତାକା ଧରି ମଞ୍ଚ ଉପରକୁ ମାଡ଼ିଆସୁଛନ୍ତି !

ମନ୍ତ୍ରୀ କହିଲେ—କଳାପତାକା ଦେଖି ବ୍ୟସ୍ତ ହୁଅନା । ସେମାନେ କଳା ବିଭାଗର ଛାତ୍ର ହୋଇଥିବେ । କଳାର ସୁରକ୍ଷା ଲାଗି ସେମାନେ ଆମ୍ଭ ପାଖକୁ ଆସୁଛନ୍ତି । ସେମାନଙ୍କ ଲାଗି ବାଟ କରିଦିଅ । ସେମାନେ ଆସନ୍ତୁ ! ଆମ୍ଭେ ତ ସ୍ୱୟଂ ଜଣେ କଳାକାର ।

ହଠାତ୍ ସ୍ଲୋଗାନ ଶୁଭିଲା—ଆମ୍ଭର ଦାବୀ ପୂରଣ କର—ନଚେତ୍ ଗାଦି ଛାଡ଼ିଦିଅ ।

ଆମ୍ଭର ଦାବୀ କେତୋଟି ?—ସବୁ ମାତ୍ର ପାଞ୍ଚୋଟି ।

ମନ୍ତ୍ରୀ ବେଶ୍ ଅବିଚଳିତ ଶବ୍ଦରେ ହସି ହସି ପଚାରିଲେ—ହଉ ହଉ ! ଆଉ ବେଶି ପାଟିତୁଣ୍ଡ କର ନାହିଁ । ଏଇଠିକି ଆସ । ବସ ମୋ ପାଖରେ—କଣ କ'ଣ ପାଞ୍ଚୋଟି ଦାବି ଦେଖି କୁହ ତ ବତ୍ସମାନେ !

ସେମାନଙ୍କ ମଧ୍ୟରୁ କେତେ ଜଣ ଖୁବ୍ ରାଗିକରି ମନ୍ତ୍ରୀଙ୍କ ପାଖରେ ବସିଗଲେ ଓ ଖୁବ୍ ଜୋର୍‌ରେ ଟେବୁଲ ଉପରେ ବିଧାମାରି ତାଳ ଦେଇ ପରି କହିଚାଲିଲେ—

ନମ୍ବର ଏକ—ହଷ୍ଟେଲରେ ପ୍ରତି କୋଠରିରେ ପଙ୍ଖା ଲଗାଅ ।

ନମ୍ବର ଦୁଇ—କାଂପସ୍ ଭିତରେ ଫ୍ରି-ସିନେମା ଦେଖାଇବାର ବନ୍ଦୋବସ୍ତ କର ।

ନମ୍ବର ତିନି—ମେସ୍ ଫିଜ୍ ଅଧା କର ।

ନମ୍ବର ଚାରି—କୁଳପତିଙ୍କୁ ବାହାରକର ।

ନମ୍ବର ପାଞ୍ଚ—ଲେଡିଜ୍ ହଷ୍ଟେଲର ପାଚେରି ଚାରିଫୁଟରୁ ବେଶି ଉଚ୍ଚ କରନାହିଁ ।

ମନ୍ତ୍ରୀ ହସି ହସି କହିଲେ—ଠିକ୍ ଅଛି, ମୁଁ ଏତକ ଲେଖିନେଉଛି । ଖୁବ୍ ଶୀଘ୍ର ଏଥି ପ୍ରତି କାବିନେଟ୍‌ର ଦୃଷ୍ଟି ଆକର୍ଷଣ କରିବି ।

ଛାତ୍ରମାନେ କିନ୍ତୁ ଆହୁରି ଜୋର୍ ଗଳାରେ ଚଲେଇଲାଗିଲେ—ନା ! ଆପଣ ଏତକ ପୂରଣ କରିବା ଲାଗି ବର୍ତ୍ତମାନ ପ୍ରତିଶ୍ରୁତି ଦିଅନ୍ତୁ । ନଚେତ୍ ଏହି ମୁହୂର୍ତ୍ତରେ ଗାଦି ଛାଡ଼ନ୍ତୁ ।

ମନ୍ତ୍ରୀ କହିଲେ—ହେ ଦେଶର ଭବିଷ୍ୟତମାନେ ! ଗାଦୀ ଛାଡ଼ିବା ମୋ ପକ୍ଷରେ ସେମିତି କିଛି କଷ୍ଟକର ନୁହେଁ । ମୁଁ ଯାହା ଲକ୍ଷ୍ୟ କରୁଛି—ମୁଁ ଗାଦି ନ ଛାଡ଼ିଲେ ବି ଗାଦି ଯେ ମୋତେ କୋଉ ମୁହୂର୍ତ୍ତରେ ଛାଡ଼ିବ, ତା'ର କିଛି ଠିକ୍ ଠିକଣା ନାହିଁ । ଗତ ପନ୍ଦର ବର୍ଷ ଧରି ତୁମ ପ୍ରଦେଶର ଭୋଟରମାନେ ଯେମିତି ଭୋଟ ଦେଇଆସିଛନ୍ତି, ସେଥିରେ କୋଉ ମନ୍ତ୍ରୀ ଭଲ ଏକାଦିକ୍ରମେ ପାଞ୍ଚ ବର୍ଷ ଗାଦିରେ ବସିଅଛିଛି ? ସେ ଲୋଭ ମୋର ନାହିଁ । ମୁଁ ଏଠୁ ଗଲେ ମୋର ଓକିଲାତି ବ୍ୟବସାୟ ଚଳେଇବି—ପ୍ରେମ-କବିତା ଲେଖିବି; ମାତ୍ର ତୁମ୍ଭମାନଙ୍କ କଥାରେ ଗାଦି ଛାଡ଼ିଦେବି କାହିଁକି ? ତୁମ୍ଭେମାନେ କଣ ମୋତେ ଭୋଟ ଦେଇଛ ?

ଏହି ସମୟରେ ଛାତ୍ରମାନଙ୍କ ମଧ୍ୟରୁ କେତେକ ବିଭିନ୍ନ ପଶୁ-ପକ୍ଷୀଙ୍କ ସ୍ୱର ଅନୁକରଣ କରି ବୋବେଇବାରେ ଲାଗିଲେ । ମନ୍ତ୍ରୀ ଭାବିଲେ—ସଭା ପରେ ଯେଉଁ ଭେରାଇଟି ଶୋ ହେବାର ଥିଲା, ତାହା ବୋଧେ ଏହିଭଳି ଆରମ୍ଭ ହେଲା । ତେଣୁ ମନ୍ତ୍ରୀ କହିଲେ ହସିହସି – ଆଚ୍ଛା କୁକୁର, ବିଲେଇ, ବିଲୁଆ ଓ ଗଧ, କୁକୁଡ଼ା ଓ କୁଆମାନଙ୍କ ବୋବାଳି ତ ବେଶ୍ ଶୁଣିଲି । ଏବେ ଦେଖି ବୋବେଇଲି କୋଇଲି କିମ୍ବା ହଳଦୀବସନ୍ତ ଚଢ଼େଇଙ୍କ

ଭଳ। ଅଚ୍ଛା ! ବାଘ ଓ ସିଂହ ଭଳ କେଉଁମାନେ ହେଣ୍ଟାଲ ମାରପାରବ ଦେଖି ଚେଷ୍ଟା କର !

କେତେକ ଛାତ୍ର ଚେଷ୍ଟା କଲେ, ମାତ୍ର ବିଫଳ ହେଲରୁ ଚୁପ୍ ହୁଅନ୍ତେ, ମନ୍ତ୍ରୀ କହିଲେ—ଦେଖ ବାବୁମାନେ ! ମୁଁ ବର୍ତ୍ତମାନ ତୁମ୍ଭମାନଙ୍କ ଲଗି କଣ କରପାରେ କହୁଛୁ । ପ୍ରଥମେ ମୁଁ ତୁମ୍ଭମାନଙ୍କର ଶତକଡ଼ା ପଚିଶ ଭାଗ ଛାତ୍ରବୃତ୍ତି ବଢ଼ାଇଦେବି ।

କେତେକ ଛାତ୍ର ଆପତ୍ତି କଲେ—ଅଜ୍ଞା ! ସେଥିରୁ ଆମକୁ କଣ ମିଳିବ ? ତାକୁ ତବୁ ଗଣ୍ଡକୀଟମାନେ ମାରନେବେ । ଆପଣ ବରଂ ମାସ୍ ପିକ୍ନିକ ପାଇଁ ଅଧିକ ଗ୍ରାଣ୍ଟ ଦଅନ୍ତୁ ।

ମନ୍ତ୍ରୀ ସେକଥା ନ ଶୁଣି କହିଲେ—ତୁମ୍ଭମାନଙ୍କର ପଞ୍ଚଦାବୀ ମଧ୍ୟରୁ ଦୁଇଟି ଦାବୀ ଗ୍ରହଣ କରୁଛୁ । ନମ୍ବର ୧କ—ଲେଡିଜ୍ ହଷ୍ଟେଲ ପାଚେରି ଆଉ ଉଚା ନ କରିବାକୁ କାଲି ସକାଳେ ନିର୍ଦ୍ଦେଶ ଦେବି ।

ଛାତ୍ରମାନେ କରତାଳି ଦେଲେ ଓ କେତେକ ଛାତ୍ର ଶ୍ୱାନସ୍ୱରକୁ ଅନୁକରଣ କରି କୃତଜ୍ଞତା ପ୍ରକାଶ କରେ ।

ମନ୍ତ୍ରୀ ପୁଣି କହିଲେ—ଲୋକସମ୍ପର୍କ ବିଭାଗକୁ ନିର୍ଦ୍ଦେଶ ଦେବି ସେମାନେ ମାସକେ ଦୁଇଥର ୧ଠି ସିନେମା ଦେଖାଇଦେଇଯିବେ ।

ପୁଣି ଘନ ଘନ କରତାଳି ସହ ଶୃଗାଳର ସମ୍ମିଳିତ ହୁକେ-ହୋ ଭାବରେ ତୁମୁଳ କୃତଜ୍ଞତା ପ୍ରକାଶ ପାଇଲା ।

ମନ୍ତ୍ରୀ କହିଲେ—ଆଉ ତିନୋଟି ଦାବୀ ସମ୍ବନ୍ଧେ ମୁଁ କାବିନେଟ୍ର ପରାମର୍ଶ ନେଇ ପରେ ଜଣାଇବି ।

ଛାତ୍ରମାନେ ଏହା ଶୁଣି ଆହୁରି ଜୋର୍ରେ ଚଲେଇଲାଗିଲେ । ଏମନ୍ତ ସମୟରେ ଦଳେ ଯୁବ ଅଧ୍ୟାପକ କେତେକ ଅର୍ଦ୍ଧପକ୍ୱକେଶ ଓ ମସ୍ତିଷ୍କଧାରୀ ଅଧ୍ୟାପକଙ୍କୁ ସଙ୍ଗରେ ଧରି ମନ୍ତ୍ରୀଙ୍କ ପାଖକୁ ଆସି ଗୋଟିଏ ଲମ୍ବା ପ୍ଲାକେପତ୍ର ବଢ଼ାଇ ଦଅନ୍ତେ ମନ୍ତ୍ରୀ କହିଲେ—ସଂକ୍ଷେପରେ କଥାଟି କୁହନ୍ତୁ—ଯେମିତ କ୍ଲାସରେ ପଏଣ୍ଟ ଡାକନ୍ତ—କହନ୍ତୁ ନମ୍ବର—ୱାନ୍ ଟି···

ଜଣେ ଅଧ୍ୟାପକ କହିଲେ—ଆଜ୍ଞା, ଆମର ଦରମା ଆଇ·ଏ.ଏସ୍.ଙ୍କ ଦରମା ସଙ୍ଗେ ଏହି ମାର୍ଚ୍ଚ ପହିଲାଟାରୁ ସମାନ କରିଦଅନ୍ତୁ ନଚେତ୍ ମାର୍ଚ୍ଚ ଦୁଇ ତାରିଖଠାରୁ ପାଠବନ୍ଦ କରିବାକୁ ବାଧ୍ୟହେବୁ ।

ମନ୍ତ୍ରୀ ସ୍ୱଗତେ ଭାବିଲେ—ବରଂ ତଦ୍ଦ୍ୱାରା ଦେଶରେ ପ୍ରଭୂତ ମଙ୍ଗଳ ହୁଅନ୍ତା । କାରଣ ଦେଶଟାଯାକ ଶାଳ ପାଠ ଖୁଲଛୁ—ଆଜି ସବୁ ବନ୍ଦ ହେବାକୁ ବସିଲାଣି । ମାତ୍ର

ପ୍ରକାଶ୍ୟେ କହିଲେ—ଆହା—ଆହା ! ଏତେଦୂର ଯା'ନ୍ତୁ ନାହିଁ । ଆପଣମାନେ ବନ୍ଧୁଟିଏ ପାଟିବନ୍ଦ କରିଦେଲେ ଦେଶରେ କେତେ ଜ୍ଞାନ-ଉତ୍ପନ୍ନ ବନ୍ଦହୋଇଯିବ । ଅଚ୍ଛା-ଅଚ୍ଛା ବୁଝିବା —ଦ୍ୱିତୀୟଟି କଣ କହନ୍ତୁ ।

—ଆଜ୍ଞା, କଲେଜରେ ଲମ୍ବା ଗ୍ରୀଷ୍ମଛୁଟି ସାଙ୍ଗକୁ ଆଉ ଦୁଇଟି ଲମ୍ବାଛୁଟି ହେଉ ।

ମନ୍ତ୍ରୀ ପଚାରିଲେ—କଣ କଣ ?

ବର୍ଷାଛୁଟି ଦୁଇ ମାସ ଓ ଶୀତଛୁଟି ଦୁଇ ମାସ । ବୌଦ୍ଧିକ ଶ୍ରମ ଲାଗି କେବଳ ଗ୍ରୀଷ୍ମ ବାଧକ ହେଉ ନାହିଁ । ଗ୍ରୀଷ୍ମରେ ଯେପରି ବୁଦ୍ଧି ତରଳିଯାଇପାରେ—ଘୋର ବର୍ଷାରେ ସେମିତି ବୁଦ୍ଧି ଧୋଇହୋଇଯିବାର ଆଶଙ୍କା ଥାଏ ଏବଂ ଶୀତକାଳେ ବୁଦ୍ଧି ଏକବାର ବରଫ ଭଳି ଜମାଟ ବାନ୍ଧିଯିବାର ଆମେ ଅନୁଭବ କରୁଛୁ ।

ମନ୍ତ୍ରୀ ଅଧ୍ୟାପକମାନଙ୍କ ଆଡ଼କୁ ଚାହିଁ କହିଲେ—ହଁ, ବୁଦ୍ଧି ଯେ ଅଧ୍ୟାପକମାନଙ୍କର ଜମାଟ ବାନ୍ଧିଯାଉଛି—ତାହା ତୁମ୍ଭମାନଙ୍କର ଆଖିର ଚାହାଣିରୁ ସ୍ପଷ୍ଟ ଜଣାପଡ଼ୁଛି—ଏହି ବସନ୍ତ ଋତୁରେ ବି । ମାତ୍ର ପ୍ରକାଶ୍ୟେ କହିଲେ—ହଉ ହଉ, ଏବେ ତୃତୀୟଟି କହିବାହେଉ ।

କଲେଜର ସବୁ ପରୀକ୍ଷା ପୋଲିସ ଓ ମାଜିଷ୍ଟ୍ରେଟମାନଙ୍କ ତତ୍ତ୍ୱାବଧାନରେ ହେଉ । ବିଶ୍ୱବିଦ୍ୟାଳୟର ସିନେଟ ଓ ସିଣ୍ଡିକେଟ୍ ମିଟିଙ୍ଗ୍ ବେଳେ ସ୍ଥାୟୀ ପୋଲିସ୍ ପେଟ୍ରୋଲିଙ୍ଗ୍ର ବ୍ୟବସ୍ଥା ହେଉ । ପ୍ରତି କ୍ଲାସର ଦୁଆରମୁହଁରେ ଦୁଇଜଣ କରି ଲଠିଆଳ ପୋଲିସ୍, ଏଥି ସକାଶେ ପ୍ରତି କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ଥାୟୀ ମିଲିଟାରୀ ପୋଲିସ୍ ମହଜୁଦ ରହନ୍ତୁ ।

ମନ୍ତ୍ରୀଙ୍କର ଦୃଷ୍ଟି ଆହୁରି ନରମ ହୋଇଉଠିଲା । ତାଙ୍କ ଅଧରରେ ଜେଜେବାପ-ସୁଲଭ ହସ ଫୁଟିଉଠିଲା । ମାତ୍ର ଏପଟେ ଛାତ୍ରମାନେ ଉଚ୍ଚସ୍ୱରରେ ଚଲେଇଉଠିଲେ— ।

ପୋଲିସ୍ ଆସିଲେ—ନିଆଁ ଜଳିବ—ନିଆଁ ଜଳିବ

ଅଧ୍ୟାପକଙ୍କୁ—ଘୁଲିକର—ଘୁଲିକର

ଅଧ୍ୟାପକଙ୍କୁ—ଛୁରୀମାର—ଛୁରୀମାର

ଅଧ୍ୟାପକଙ୍କ—କାନ କାଟ—କାନ କାଟ

ସମାଜବାଦର ଶତ୍ରୁ କିଏ ? —ଅଧ୍ୟାପକ

ଅଧ୍ୟାପକଙ୍କ ଦରମା କମାଅ—ଛାତ୍ରାବାସରେ ପଙ୍ଖା ଲଗାଅ ।

ଏତେବେଳେ କେତେକ ଯୁବ-ଅଧ୍ୟାପକ କ୍ରୋଧରେ ଉନ୍ମତ୍ତ ହୋଇ "କଣ କହୁଚରେ ଶଳା ବାଷ୍ଟର୍ଡ଼'ସ" ବୋଲି ଚିତ୍କାର କରି ଛାତ୍ରଙ୍କ ଆଡ଼କୁ ମାଡ଼ିଯାନ୍ତେ—ଛାତ୍ର ଓ ଅଧ୍ୟାପକଙ୍କ ମଧ୍ୟରେ ଖଣ୍ଡଯୁଦ୍ଧ ଲାଗିଗଲା । ସେମାନେ ମରାମରି ହେଉଁ ହେଉଁ ମଞ୍ଚ ଛାଡ଼ି ତଳକୁ ଡେଇଁପଡ଼ିଲେ । ସେଠାରେ ଘନ ଘନ ଧେଲାପେଲା ଓ ଗାଳିଦିଆଦେଇ ଚାଲିଲା ।

ଅବସ୍ଥା ଏପରି ଦେଖି କତିପୟ ଅର୍ଦ୍ଧପକ୍ୱକେଶ ଓ ମସ୍ତିଷ୍କବାନ୍ ପ୍ରବୀଣ ଅଧ୍ୟାପକ ଆପଣାର ପୈତୃକ ପ୍ରାଣଟିମାନ ବଞ୍ଚାଇବାକୁ ଏହି ସୁଯୋଗରେ ଯେ ଯୁଆଡ଼େ ଖସିଗଲେ । ଏଣେ କିନ୍ତୁ କୁସନ୍ ଖଚିତ ଚଉକିରେ ମାନ୍ୟବର ଶିକ୍ଷାମନ୍ତ୍ରୀ ରଘୁନାଥ ଖୁବ୍ ନିଶ୍ଚିନ୍ତରେ ବସି ଗୋଡ଼ହଲାଉଥାନ୍ତି—ଧାନ ଗ୍ରେବାଉଥାନ୍ତି ଓ ଯୁବ ଅଧ୍ୟାପକମାନଙ୍କର ଏହି ଗଣ୍ଡଯୁଦ୍ଧ ଦେଖି ଏକପ୍ରକାର ଆମୋଦ ଅନୁଭବ କରୁଥାନ୍ତି ।

ଏହି ସମୟରେ ପୂର୍ବନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ଦଳେ ଯୁବତୀ ମଞ୍ଚ ଉପରକୁ ଉଠିଆସିଲେ ଏବଂ ମନ୍ତ୍ରୀଙ୍କୁ ଚତୁର୍ଦ୍ଦିଗରୁ ଘେରାଉ କରି ରହିଲେ । ରାସଲୀଳାରେ ଗୋପୀମାନେ ହାତ ଧରାଧରି ହୋଇ କୃଷ୍ଣଙ୍କୁ ଘେରି ରହିଲା ପରି ସେମାନେ ମନ୍ତ୍ରୀଙ୍କୁ ଘେରାଉ କରି ରହିଲେ ଏବଂ ବୀଣାବିନିନ୍ଦିତ କଣ୍ଠରେ ଚଳେଇଲାଗିଲେ—ପ୍ରତିଶ୍ରୁତି ଦିଅନ୍ତୁ —ନଚେତ୍ ଘୁଞ୍ଚିବୁ ନାହିଁ ।

ମଞ୍ଚ ତଳେ ଯୁବ ଓ ଯୁବ ଅଧ୍ୟାପକମାନଙ୍କର ଖଣ୍ଡଯୁଦ୍ଧ ଏବଂ ମଞ୍ଚ ଉପରେ ତରୁଣୀ ରମଣୀମାନଙ୍କକୃତ ଏହି ରମଣୀୟ ଘେରାଉ ଏବଂ ସେମାନଙ୍କର ସୁକଣ୍ଠ ନିଃସୃତ କିଛି କିଛି ମୃଦୁ ମଧୁର-ଭର୍ତ୍ସନା—ଯାହାକି ଦୂରରୁ ସଙ୍ଗୀତ ଭଳି ଶୁଭୁଥିବ—ଏସବୁ ସଙ୍ଗେ ପୁଣି ସେମାନଙ୍କ ସୁତନୁ ନିସୃତ ଓ ବିଚ୍ଛୁରିତ ନାନାଦି ସେଣ୍ଟ ଓ ଇଉଡ଼ିକୋଲନ୍‌ମାନଙ୍କର ପ୍ରାଣ-ଉନ୍ମାଦକ ସୌରଭ—ଅଠଚାଳିଶ ବର୍ଷ ବୟସ୍କ କବି-ମନ୍ତ୍ରୀ ମନେକଲେ—ସତେକି ସେ କେତକୀ ବନରେ ପ୍ରପାଡ଼ିତ ଏକ ବିଭ୍ରାନ୍ତ ମଧୁପ ! କେତକୀରଜରେ ତାଙ୍କର ଚକ୍ଷୁ ଅନ୍ଧୀଭୂତ—କେତକୀକଣ୍ଟକାଘାତରେ ତାଙ୍କର ପକ୍ଷଦ୍ୱୟ ଛିନ୍ନଭିନ୍ନ—ସେ ତା' ମଧ୍ୟରେ ରହିପାରୁନାହାନ୍ତି କି ଯାଇପାରୁନାହାନ୍ତି । ସେ କହିପାରୁନାହାନ୍ତି—ହଁ—କି ନାହିଁ କରିପାରୁନାହାନ୍ତି । ସେ କହିପାରୁନାହାନ୍ତି—ନାଁ— ।

ମନ୍ତ୍ରୀ ପୁଣି ଭାବିଲେ—ମୁଁ ଅବଶ୍ୟ ମନ୍ତ୍ରୀ ହୋଇ ଜନ୍ମି ନାହିଁ—ମାତ୍ର କବିତ୍ୱ ମୋର ଜନ୍ମଗତ ଗୁଣ । ପ୍ରେମ-କବିତାରେ ପୁଣି ମୁଁ ଖ୍ୟାତି ଅର୍ଜିଛି । ତେବେ ଆଉ ଡେରି କାହିଁକି ? ଏହି ରମଣୀୟ ମାଦକତାପୂର୍ଣ୍ଣ ପରିବେଶଟିର ସୁଯୋଗ ନେଇ ଗୋଟେ ଅଧେ ପ୍ରେମ-କବିତା ଲେଖିପକାଇଲେ ମନ୍ଦ ହୁଅନ୍ତା ନାହିଁ । କାରଣ ଯାହା ଦେଖାଗଲଣି— ଏହି ସୁନ୍ଦରୀ ବିଦୁଷୀ ତରୁଣୀମାନେ ଭୋର ହେବା ପୂର୍ବରୁ ମୋତେ ସେମାନଙ୍କର ପ୍ରସାରିତ-କର-ପଲ୍ଲବିତ-ଲତାଘେରି ମଧ୍ୟରୁ ମୁକ୍ତଦେବେନାହିଁ । ତେବେ ପ୍ରେମ-କବିତା ଲେଖିବା କଥା ଭାବୁ ଭାବୁ ମନ୍ତ୍ରୀ ହଠାତ୍ ବିମର୍ଷ ହୋଇପଡ଼ିଲେ । ନାଃ—ଗୋଟାଏ ପଦ ମଧ୍ୟ ହୃଦ-କମଳରେ ସ୍ଫୁରିତ ହେଉ ନାହିଁ । ପ୍ରେମ କବିତାର ସମୟ ଉତ୍ତୀର୍ଣ୍ଣ ହୋଇଗଲଣି । ଆଉ ନିକଟରେ ସେ ସମୟ ଆସିବ ନାହିଁ—ବା ଦେଶରେ ମଧ୍ୟ ସେ ସମୟ ସୃଷ୍ଟି ହୋଇପାରିବ ନାହିଁ । ଏହି ଯୁବକଯୁବତୀମାନଙ୍କୁ ଦେଖିଲେ କିଛି ରହସ୍ୟ ରୋମାଞ୍ଚ ବା ଖୁଣୀ ଖରାବି ଗଳ୍ପ ଲେଖାଯାଇପାରେ କିମ୍ବା ଲେଖାଯାଇପାରେ କିଛି ପର୍ନୋଗ୍ରାଫିର ସାହିତ୍ୟ ।

ଲଳିତ ରୋମାଣ୍ଟିକ ଭାବ-ଉଚ୍ଛ୍ୱାସର ଯୁଗ ଆଉ ନାହିଁ ।...ସେ କଥା ଯାହା ହେଉ— । କିନ୍ତୁ ମୁଁ ଏହି ଛାତ୍ରଛାତ୍ରୀ ଓ ଅଧ୍ୟାପକମାନଙ୍କୁ ବର୍ତ୍ତମାନ ଅବା କି ପ୍ରତିଶ୍ରୁତି ଦେବି—ଦେଇପାରିବି ? ମୋ ମୁଣ୍ଡରୁ ପ୍ରେମ-କବିତା ଯେମିତି ସ୍ଫୁରୁନାହିଁ—ସେମିତି କିଛି ମଧ୍ୟ ପ୍ରତିଶ୍ରୁତି ଦେବାକୁ ଏ ମୁଣ୍ଡରେ ଭୁକୁନାହିଁ । କେବଳ ଗୋଟିଏ କଥା ଜୁଟୁଛି—ଏହି ଶିକ୍ଷା ବିଭାଗଟି ବର୍ତ୍ତମାନ କେଉଁ ସ୍ତରରେ ରହିଛି ? ପାତାଳ ସୁତଳ ଅତଳ—ନା ରସାତଳରେ ? ଏଠି କିଛି ଆଉ ହେଲ ଭଲ ମନେହେଉନାହିଁ । କିନ୍ତୁ ଗୋଟାଏ କିଛି ପ୍ରତିଶ୍ରୁତି ମତେ ନିଶ୍ଚୟ ଏଠି ଦେଇଯିବାକୁ ହେବ ? କିନ୍ତୁ କି ପ୍ରତିଶ୍ରୁତି ? କି ପ୍ରତିଶ୍ରୁତି ?

ମାନ୍ୟବର ଶିକ୍ଷାମନ୍ତ୍ରୀ ସହସା କୁଳପତି ଓ ବିଶ୍ୱବିଦ୍ୟାଳୟର ମୁଖ୍ୟ ଅଧ୍ୟାପକ ସମେତ କେତେକ ସିଣ୍ଡିକେଟ୍ ସଭ୍ୟଙ୍କୁ ମଞ୍ଚ ଉପରକୁ ଡକାଇପଠାଇଲେ । କାରଣ ଝିଅମାନେ ଆସିବା ପରେ ସେମାନେ ମଞ୍ଚ ଛାଡ଼ି ଚାଲିଯାଇଥିଲେ । କିନ୍ତୁ ଏହି ସମୟରେ ବିଶ୍ୱବିଦ୍ୟାଳୟର ଜଣେ ଅଭିଜ୍ଞ ପିଅନ ଖଣ୍ଡିଏ କାଗଜ ମନ୍ତ୍ରୀଙ୍କ ହାତକୁ ବଢ଼ାଇଦେଲେ—ଓ ନୀରବ ବିନମ୍ରରେ ଠିଆ ହୋଇରହିଲେ । ମନ୍ତ୍ରୀ କାଗଜଟିକୁ ଧରି ପଚାରିଲେ—ତୁମମାନଙ୍କର କେଉଁ ଦାବୀ ଏଥିରେ ମୁଦ୍ରିତ ହୋଇଛି, ମୌଖିକ ଭାବେ ପ୍ରକାଶ କର ।

ବୃଦ୍ଧ ପିଅନଟି ବିନମ୍ରରେ କହିଲେ—ଆଜ୍ଞା ! ମୋର ଚାକିରି ସରିବା ପୂର୍ବରୁ ମୁଁ ଇସ୍ତଫା ଦେଇସାରିଛି । ମୁଁ ନିକଟରେ ଗ୍ରାମକୁ ଚାଲିଯିବି । କେବଳ ମୋର କେତିକି ବାକି ପାଉଣା ବିଶ୍ୱବିଦ୍ୟାଳୟଠାରୁ ଆଦାୟ କରିବା ଅପେକ୍ଷାରେ ଅଛି ।

ମନ୍ତ୍ରୀ କହିଲେ—ତୋ'ହେଲେ ଏ କାଗଜଟି କଣ ?

ଅଭିଜ୍ଞ ପିଅନ କହିଲେ—ଆଜ୍ଞା ପଢ଼ିବାହୁଅନ୍ତୁ—ସବୁ କଥା ଜାଣିପାରିବେ ।

ମନ୍ତ୍ରୀ କାଗଜଟି ପଢ଼ିବାକୁ ଲାଗିଲେ । ସେଥିରେ ଲେଖା ଥିଲା ଖଣ୍ଡିଏ ଦରଖାସ୍ତ—

ମାନ୍ୟବର ଶିକ୍ଷାମନ୍ତ୍ରୀ ମହୋଦୟ—ଉଦାରଚରିତେଷୁ !

ମହାଭାଗ !

ନିବେଦନର କାରଣ ଏହି କି ଯେ, ମୋତେ ପାଗଳ ନଭାବି ମୋର ପ୍ରସ୍ତାବଟି ବିଚାରକୁ ଆଣି କିଞ୍ଚିତ୍ ସୁସ୍ଥ-ମସ୍ତିଷ୍କତାର ପରିଚୟ ଦିଅନ୍ତୁ । କାରଣ ଏହି ବିଶ୍ୱବିଦ୍ୟାଳୟର ସମସ୍ତ ଅଧ୍ୟାପକ, ପ୍ରାଧ୍ୟାପକ ଓ ସ୍ୱାଧ୍ୟାପକ ସମେତ ଛାତ୍ରଛାତ୍ରୀଗଣ ମୋତେ ପାଗଳ ଭାବି ଉପହାସ, ପରିହାସ କରିଅଛନ୍ତି ।

ପ୍ରସ୍ତାବଟି ସଂକ୍ଷେପରେ ଏହିକି ଯେ—ଆସନ୍ତା ପାଞ୍ଚ ବର୍ଷ ଲାଗି ସମସ୍ତ କଲେଜ ଓ ବିଶ୍ୱବିଦ୍ୟାଳୟମାନ ବନ୍ଦକରିଦିଆଯାଉ; କେବଳ ସ୍କୁଲଗୁଡ଼ିକୁ ଚାଲୁରଖାଯାଉ । କଲେଜରେ କେବଳ ବିଜ୍ଞାନ ବିଭାଗଟି ଖୋଲାରଖାଯାଉ । ସେଥିରେ ଖାଲି ପାରଙ୍ଗମ ପିଲାମାନେ ପଢ଼ନ୍ତୁ ଓ ପାରଙ୍ଗମ ଅଧ୍ୟାପକମାନେ ପଢ଼ାନ୍ତୁ । ବାକି ସମସ୍ତ ଛାତ୍ର ଓ ଅଧ୍ୟାପକଙ୍କୁ

ଦଳଦଳ କରି କୃଷିକ୍ଷେତ୍ର ଓ କଳକାରଖାନାମାନଙ୍କୁ ପଠାଯାଉ । ସେଠାରେ ସେମାନେ ଦିନକୁ ଚାରିଘଣ୍ଟା ଶାରୀରିକ ଶ୍ରମ କରନ୍ତୁ ଓ ରାତିରେ ଦୁଇ-ତିନି ଘଣ୍ଟା ମାତ୍ର ସାହିତ୍ୟ, ଅର୍ଥନୀତି, ସମାଜବିଜ୍ଞାନ, ରାଜନୀତିବିଜ୍ଞାନ, ଦର୍ଶନ ଓ ଇତିହାସାଦି ପଢ଼ନ୍ତୁ । ଏ ସବୁ ବିଷୟ ପଢ଼ିବା ପାଇଁ ଏତେ ଅର୍ଥ ଓ ସମୟର ଆବଶ୍ୟକତା ନାହିଁ । ଏତିକି କରିପାରିଲେ— ଦେଶ ଉଦ୍ଧାର ପାଇବ—ନହେଲେ ଆଉ ଏ ଦେଶ ରହିବ ନାହିଁ । ଆପଣ ଏତିକି କରିପାରିଲେ ପାଞ୍ଚବର୍ଷ କାଳ ମଧ୍ୟ ଗାଦିରେ ବସି ଶାନ୍ତିରେ ସୁଶାସନ କରିପାରିବେ । ଇତି ।

ଭବଦୀୟ ବିଶ୍ୱସ୍ତ

ଶ୍ରୀ ଗୋପାଳଚରଣ ବାରିକ

ମାନ୍ୟବର ଶିକ୍ଷାମନ୍ତ୍ରୀ ରଘୁନାଥ ହରିଚନ୍ଦନ ଚିଠିଟିକୁ ବାରମ୍ବାର ପଢ଼ିଲେ । ତାଙ୍କର ଚକ୍ଷୁ ଉଜ୍ଜ୍ୱଳ ହୋଇଉଠିଲା । ସେ ଖୁବ୍ ଉତ୍ଫୁଲ୍ଲତା ଅନୁଭବ କଲେ । ସେ ଭାବିଲେ— ଶିକ୍ଷାପଦ୍ଧତି ପରିବର୍ତ୍ତନ ଫରିବର୍ତ୍ତନ ସବୁ ଝୁଟା ବାତ୍ । ଏତେ କମିସନ ଫମିସନ୍ ସବୁ ଫାଲ୍ତୁ ଉଦ୍ୟମ । ଏହାହିଁ ଏକମାତ୍ର ଉପାୟ—ଏହାହିଁ ତୁରନ୍ତ କରଣୀୟ । ଯାହାହେଉ—ଏହି ପିଅନମହାତ୍ମାଟି ହିଁ ଶିକ୍ଷାବିଭାଗର ସବୁ ସମସ୍ୟା ସମାଧାନ କରିଦେଲେ । ଏତିକି ଭାବି ମନ୍ତ୍ରୀ ଡବାରୁ ଆଉ ଖଣ୍ଡିଏ ପାନ କାଢ଼ି ପାଟିରେ ପୂରାଇଲେ ଓ ଦୁଇ ତିନିଥର ତାକୁ ଚୋବାଇ କିଛି ନିକୋଟିନ ରସ ଗଳାଧଃକରଣ କରି ବେଶ୍ ସତେଜ, ସୁସ୍ଥିର ଓ ଉତ୍ଫୁଲ୍ଲ ହୋଇଉଠିଲେ । ତା'ପରେ ଦଣ୍ଡାୟମାନ ହେଲା ମାତ୍ରେ—ମାଇକ୍‌ବାଲା ମନ୍ତ୍ରୀଙ୍କ ମୁହଁ ପାଖକୁ ମାଇକ୍‌ଟି ଘୁଞ୍ଚାଇଦେଲେ । ମାନ୍ୟବର ଶିକ୍ଷାମନ୍ତ୍ରୀ ଜଳଦଗମ୍ଭୀର ସ୍ୱରରେ ଘୋଷଣା କଲେ—ବନ୍ଧୁଗଣ !

ସମସ୍ତ ସଭାସ୍ଥଳ ନୀରବ ହୋଇ ଉତ୍କଣ୍ଠିତ ହୋଇଉଠିଲା । ତା'ପରେ ମନ୍ତ୍ରୀ ଦ୍ୱିତୀୟବାର ଛେପ ଢୋକି କହିଲେ—ବନ୍ଧୁଗଣ ! ମୁଁ ଆପଣମାନଙ୍କୁ ଏଠି ଆଜି ଏହି ମୁହୂର୍ତ୍ତରେ ଏହି ପ୍ରତିଶ୍ରୁତି ଦେଉଛି କି—ଏହି ମାସକ ମଧ୍ୟରେ ସମସ୍ତ କଲେଜ ଓ ବିଶ୍ୱବିଦ୍ୟାଳୟ ଆସନ୍ତା ୫ ବର୍ଷ ଲାଗି ବନ୍ଦ କରିଦେବି ଏବଂ ଛାତ୍ରଛାତ୍ରୀ ଓ ଅଧ୍ୟାପକମାନଙ୍କ ଲାଗି ଏକ ସୁବନ୍ଦୋବସ୍ତ କରିଦେବି । ଯଦି ଏହା ନ କରିପାରିବି—ତେବେ ମୁଁ ତିନିବାର ସତ୍ୟ କରି କହୁଛି—ଗାଦି ଛାଡ଼ିବି—ଛାଡ଼ିବି—ଛାଡ଼ିବି ।

ସଭା ମଧ୍ୟରୁ ପ୍ରଶ୍ନ ଆସିଲା—ଆମ୍ଭମାନଙ୍କ ଲାଗି କି କି ବନ୍ଦୋବସ୍ତ କରିବେ ?

ମନ୍ତ୍ରୀ ସଦମ୍ଭେ ଉତ୍ତର ଦେଲେ—ତାହା କୃଷିକ୍ଷେତ୍ର ଓ କାରଖାନା ଆଦିରେ ପ୍ରମାଣିତ ହେବ ! ମୁଁ ଏହା ନିଶ୍ଚୟ କରିବି—କରିବି—କରିବି । ତା' ନହେଲେ ସମାଜବାଦ ଝୁଟା ହେବ—ଗଣତନ୍ତ୍ର ଝୁଟା ହେବ ।

ଏକଥା ଶୁଣି ସଭାରେ ଖୁବ୍ ହାଲହୋଲା ପଡ଼ିଗଲା । ମାତ୍ର ମନ୍ତ୍ରୀ ସେହି ହଟ୍ଟଗୋଳ ମଧ୍ୟରେ ପଶି ଅପେକ୍ଷମାଣ ମଟରଗାଡ଼ି ମଧ୍ୟକୁ ନ ଯାଇ—ନିକଟରେ ପ୍ରସ୍ତୁତ ଥିବା ଗୋଟିଏ ରିକ୍ସା ଉପରେ ଆରୂଢ଼ ହୋଇ କହିଲେ—ରିକ୍‌ସାବାଲା, ଚଲାଅ—ଚଲାଅ । □□□

# ଲଟେରୀଙ୍କାର ଛାତି

ଜୀବନରେ ଆପଣ ବହୁବାର ବହୁ ଭାଲୁ ଧରିଥିବେ ଓ ବହୁ ଭାଲୁ ଆପଣଙ୍କୁ ମଧ୍ୟ ଧରିଥିବେ—କିଛି ସମୟ ଲାଗି ଏଇ ଧରାଧରି ଚାଲି ବା ନୃତ୍ୟ ଚାଲିଥିବ । ତା'ପରେ ଆପଣ ଭାଲୁକୁ ଛାଡ଼ିଥିବେ ବା ଭାଲୁ ଆପଣଙ୍କୁ ଛାଡ଼ିଥିବ ବା ଆପଣ ଆଉ କାହାକୁ ଭାଲୁ ଧରାଇଦେଇ ଘଟଣାସ୍ଥଳରୁ ଖସିଯାଇଥିବେ । ମାତ୍ର ଲଟେରି ରୂପକ ଭାଲୁ ଯଦି ଥରେ ଆପଣଙ୍କୁ ଧରିଛି ବା ଆପଣ ଯଦି ତାକୁ କେବେ ଥରେ ଧରିଛନ୍ତି, ତେବେ ସେ ଭାଲୁ ଆପଣଙ୍କୁ ଛାଡ଼ିବ ନାହିଁ ବା ଆପଣ ମଧ୍ୟ ସେ ଭାଲୁକୁ ମୃତ୍ୟୁ-ଅବଧି ଆଉ ଛାଡ଼ିବେ ନାହିଁ, ଛାଡ଼ିପାରିବେ ନାହିଁ ।

ମୋ ନିଜ ଜୀବନର ଅଭିଜ୍ଞତା କହୁଛି ଶୁଣନ୍ତୁ । ମୋ ଭାଲୁଟି ହେଉଛି—ପ୍ରତାପଗଡ଼ କଲେଜର ବହୁ ବିଜ୍ଞାପିତ, ବହୁ ବିଗ୍ରୁତ, ବହୁ ପରୀକ୍ଷିତ ବାର୍ଷିକ ଲଟେରି । ଏହାର ପ୍ରଥମ ପୁରସ୍କାର ତିନୋଟି । ପ୍ରତ୍ୟେକର ମୂଲ୍ୟ ଏକଲକ୍ଷ ପଚିଶି ହଜାର ଟଙ୍କା । ଦ୍ୱିତୀୟ ପୁରସ୍କାର ଛଅଟି । କେବଳ ଏକ ଲକ୍ଷେ ଟଙ୍କା । ତୃତୀୟ ପୁରସ୍କାର ବାରଟି—ପଚିଶ ହଜାର ଟଙ୍କା ଲେଖାଏଁ । ଆଉ ଚତୁର୍ଥ ପୁରସ୍କାର ପଚିଶଟି—ଦଶ ହଜାର ଟଙ୍କା ଲେଖାଏଁ ।

ଏହି ଲଟେରି ଟିକଟ କିଣିବାକୁ ମୁଁ ମୂଳରୁ ଆଦୌ ରାଜି ନଥିଲି । କେବଳ ମୋର ପତ୍ନୀଙ୍କର ଅନୁରୋଧରେ—ଅନୁରୋଧ କାହିଁକି ? ସେ ରୀତିମତ କଳିକଜିଆ ମଧ୍ୟ ଆରମ୍ଭ କରିଦେଲେ ସେହି କେତେଦିନ । ମାସେ କାଳ ନଖାଇ, ନପିଇ, ନଶୋଇ ସେ କଣ୍ଢା ହୋଇଗଲେ ! ଏକାଜିଦ୍—"ପାଞ୍ଚଟା ଟଙ୍କିକିଆ ଲଟେରି ନିଶ୍ଚୟ କିଣାହେବ । ନୋହିଲେ ମୋ ଆଶା ଛାଡ଼ ।"

ପାଠକେ ବିସ୍ମିତ ହେବେ—କହିବେ—ଲେଖକଟି ମହା କଂଜୁସ୍ ଲୋକ । ପାଠିକାମାନେ ଅଭିଶାପ ଦେବେ—ଏ ଲେଖକ ମହା ଷ୍ଟୋନ୍‌ହାର୍ଟ ଲୋକ୍ ! ପତ୍ନୀପ୍ରେମ କ'ଣ ବୁଝେନାହିଁ । ଟଙ୍କା ପାଞ୍ଚଟା ଲାଗି ଯେ ପ୍ରାଣପ୍ରିୟା ଭାର୍ଯ୍ୟାକୁ ମାସେ କାଳ ଶୁଖାଇ ଶୁଖାଇ ମାରେ—ସେଇଟାର କେତେ ବଡ଼ ବା ହୃଦୟ ? ସେଇଟା କି ମାଂସକି ? ତା'ର ଲେଖାକୁ ଚୁଲି ଭିତରେ ଜଳାଇଦେବା ଉଚିତ ।

ବନ୍ଧୁଗଣ ! ମୋର କଲମର ଦ୍ୱାହି ଦେଇ କହୁଛି—ସେ କୃପଣତା ମୋର ନାହିଁ କିମ୍ବା ପତ୍ନୀପ୍ରେମରେ ମୋର କେବେହେଲେ ଲୁଣ୍ଠା ନ ଥିଲା—ନାହିଁ—ନୋହିବ । ମୋର ପତ୍ନୀଙ୍କୁ ମୁଁ କେତେ ଭଲପାଏ, ତାହା ତାଙ୍କର ମୋର ବିବାହର ପାଞ୍ଚବର୍ଷ ମଧ୍ୟରେ ଲେଖିଥିବା ପ୍ରେମପତ୍ରଗୁଡ଼ିକରୁ ଆପଣ ପ୍ରମାଣ ପାଇପାରିବେ । ସେଗୁଡ଼ିକୁ ସେ ସାଇତି

ରଖିଛନ୍ତି । ତାଙ୍କର ମହାପ୍ରସ୍ଥାଣ ପରେ—ମୁଁ ଜବାବ୍ ଦେଉଛି—ସେଗୁଡ଼ିକୁ ଛପାଇଦେବି । ସେତେବେଳେ ଆପଣ ସେଗୁଡ଼ିକୁ (କିଣିକରି) ପଢ଼ି ଦେଖିବେ । ଆଗରୁ କହିବା ନିଷ୍ପ୍ରୟୋଜନ । ଛାଡ଼ନ୍ତୁ—ଅସଲ କଥା ଶୁଣନ୍ତୁ—ମୁଁ କାହିଁକି ମୂଳରୁ ଲଟେରି ଟିକେଟ କିଣିବାକୁ ମଙ୍ଗୁ ନଥିଲି ? ସେ ଗୋଟିଏ ଇତିହାସ ।

ଯେତେବେଳେ ମୁଁ ମାତ୍ର ଶହେକୋଡ଼ିଏ ଟଙ୍କାର ଚାକିରିଟିଏ କରିଥିଲି, ସେତେବେଳେ ମୋତେ ବହୁ ଅଭାବ ଅସୁବିଧା ମଧ୍ୟରେ ପଡ଼ିବାକୁ ହୋଇଛି । ହଜାରେ ଖଣ୍ଡେ କରଜ କରିପକାଇଥିଲି । ଚାରୋଟି ପିଲା । ବୁଢ଼ା ବାପା, ବୁଢ଼ୀ ମା’, ଦୁଇଟି ସାନଭାଇ—ଗୋଟିଏ ସେଥିରୁ କେମ୍ପା—ମାଇନର୍ ପଢ଼ି ଗ୍ରାମରେ ପାନଦୋକାନ କରି ଚଳୁଥାଏ । ଆଉ ଗୋଟିଏ ଭାଇ—ମାଟ୍ରିକ ଫେଲ୍—ଖୁବ୍ ବୁଦ୍ଧିଆ—ମାତ୍ର ଗ୍ରାମ ନିଃ ପ୍ରାଃ ସ୍କୁଲରେ ହେଡ୍‌ପଣ୍ଡିତ । ଅର୍ଥାଭାବରେ ବିବାହ ବାହାହୋଇପାରୁନଥାଏ । ଆଉ ଏଣେ—ବିଧବା ଭଉଣୀଟିଏ—ଅଉ ତା’ର ଲଣ୍ଡା ବିକଟିକ । ମୋଟଉପରେ ଭୟଙ୍କର ଦୁରବସ୍ଥା—ସହଜେ ତ ମହର୍ଗ କାଳ ।

ସେତେବେଳେ ପ୍ରତି ମାସରେ—ଟଙ୍କେ ଦି’ ଟଙ୍କାର ଲଟେରି କିଣୁଥାଏ । ସମଗ୍ର ଭାରତର ବିଭିନ୍ନ ଲଟେରି ବହୁ ଥିଲେ । ଏମିତି ପାଞ୍ଚ ବର୍ଷକାଳ ! ବନ୍ଧୁବାନ୍ଧବ ଥଟ୍ଟା କରନ୍ତି—“ହତଭାଗ୍ୟ !! ଯଦି ରାତାରାତି ଲକ୍ଷପତି ହବାର ସୌଭାଗ୍ୟ ତୋ’ କପାଳରେ ଥାନ୍ତା—ତୁ ହାତ୍ପ କିରାଣି ହୋଇଥାନ୍ତୁ ? ତୋ’ ଭାଇ ମାଷ୍ଟ୍ରି ହୋଇଥାନ୍ତା ?

ବାପ ମାଆ ମଧ୍ୟ ନୈରାଶ୍ୟବାଣୀ ଶୁଣାନ୍ତି—କାହିଁକି ସେଥିରେ ଅଯଥା ମାତିଛୁରେ ବାପ ? ଧନ ସାରୁଛୁ ? ‘ପିତାମାତା ସୁକୃତରୁ ପୁତ୍ର ହୁଏ ସୁଖୀ’—ଆମର ସେ ସୁକୃତ କାହିଁ ଯେ ତୁ ଲକ୍ଷପତି ହେବୁ ?

ମୋର ପ୍ରିୟତମା ପତ୍ନୀ ମଧ୍ୟ ଥଟ୍ଟା କରୁଥିଲେ—ଭଜ ନାହିଁ, ଲଟେରି ଟିକଟ କିଣା-ହେଉଛି ?

ମୁଁ କିନ୍ତୁ କାହାକଥା ଶୁଣୁନଥିଲି । ନୈରାଶ୍ୟ ମୋର ନଥିଲା । ମୁଁ ଜାଣିଥିଲି—ହାତୀ ଯାହା ମୁଣ୍ଡରେ ସୁନାକଳସ ଢାଳିବାକୁ ଆସେ, ସେ ତା’ ପୂର୍ବରୁ ସୌଭାଗ୍ୟର ସିଂହାସନରେ ଅଧିରୂଢ଼ ହୋଇନଥାଏ । ସେ ହୁଏତ ବନସ୍ତରେ ବୁଲୁଥାଏ, କିମ୍ବା ରାସ୍ତାରେ, କିମ୍ବା ନଈ ପୋଖରୀ କୂଳେ, ନତୁବା ଏମିତି ଗୋଟେ ଦୁଇବଖରିଆ ଅସନା କଚ୍ଚା ଭଲଘରର ପିଣ୍ଡାରେ ବସି ନର୍ଦ୍ଦମାକୁ ମୁହଁକରି ମୋ ଭଳି ଦାନ୍ତଘଷାସାରି ଜିଭ ଛେଲୁଥାଏ—ଆଉ ମନେ ମନେ ଭାବୁଥାଏ—ଆଜି କୋଡ଼ିଏ ତାରିଖ—ଟଙ୍କା ସରିଗଲା—ସ୍ତ୍ରୀର ଶାଢ଼ି ନାହିଁ—ପିଲାଙ୍କର ସରସ୍ୱତୀପୂଜା ଆସୁଛି—ଘରଭଡ଼ା ମାସେ ବାକୀ ରହିଲାଣି—କଣ କରିବ ? ଠିକ୍ ଏହି ସମୟରେ ରାଜାହାତୀ କେଉଁ ଅଜଣା ରାଇଜର ପାଟହାତୀ ବହୁ ରାଜ୍ୟ ବୁଲିବୁଲି ଆସି ଶେଷରେ ସୁନାକଳସ ଆଣି ଢାଳିଦିଏ ତା’ର ମୁଣ୍ଡ ଉପରେ । କଥାସବୁ ଏମିତି

ଘଟେ । ଭାଗ୍ୟ ସବୁ ଅଗ୍ରନକ ଏମିତ ଉଦୟ ହୋଇଯାଏ—ଆଗରୁ କହିବୋଲି ଘଟେ-ନାହିଁ । ଭାଗ୍ୟର ଅନ୍ଧାର ଆକାଶରେ ଅକସ୍ମାତ୍ ସୂର୍ଯ୍ୟୋଦୟ ହୁଏ ।

ଏଇ ସ୍ୱପ୍ନରେ ସେତେବେଳେ ପ୍ରଚୁର ଲଟେରି ଟିକଟ କିଣୁଥିଲି—ବିକୁଥିଲି ମଧ୍ୟ । ମନରେ ସବୁବେଳେ ଆଶା, ଯଦି ଅତି କମ୍‌ରେ ଟଙ୍କା ପଚିଶଟା ପାଇଯାଏ—ତେବେ ମୋର ପ୍ରାଣସମା ପତ୍ନୀପାଇଁ ଖଣ୍ଡିଏ କୋଡ଼ିଏଟଙ୍କିଆ ଶାଢ଼ି କିଣିଦେବି । ( ବିବାହର ବାହାର-ପିନ୍ଧା ଶାଢ଼ି ମାତ୍ର ଦୁଇ ଖଣ୍ଡି—ତାହା ମଧ୍ୟ ଦଶ ବାର ଟଙ୍କା ମୂଲ୍ୟରୁ ଉର୍ଦ୍ଧ୍ୱ ନୁହେଁ । ) ଆଉ ପଚିଶ ଟଙ୍କାରୁ—ମୋର ଖଣ୍ଡେ ସାର୍ଟ ପନ୍ଦର ଟଙ୍କା—ମୋର ବୁଢ଼ା ବାପାଙ୍କ ପାଇଁ ହଳେ ହାବାଇ ଚଟି ସାତ ଟଙ୍କା—ବଡ଼ପୁଅ ବହୁଦିନୁ ଲଗାଇଛି—ଗୋଟାଏ ଫାଉଣ୍ଟେନପେନ୍—ପାଞ୍ଚ ଟଙ୍କା—ଆଉ ବଡ଼ଝିଅ ଲାଗି ହଳେ ନକଲି କାନଫୁଲ ।

ଆଉ ଯଦି ଭଗବାନଙ୍କର କୃପା ଥାଏ—ପାଇଯାଏ ପଚିଶ ହଜାର ? ? ତେବେ—

ରେଡ଼ିଓଟିଏ

ସାଇକେଲରେ ଡାଇନାମାଟିଏ

ଦୁଇ ଝିଅଙ୍କ ଲାଗି ଚୂଡ଼ି ହ'ପଟ

ବୁଢ଼ା ବାପ ଲାଗି—ଶାଲ୍ ଖଣ୍ଡିଏ

ବିଧବା ଭଉଣୀଟିକୁ ହଜାରେ

ବେକାର ସାନ ଭାଇଟିକୁ ମନୋହାରୀ ଦୋକାନଟିଏ ଖୋଲିବାଲାଗି ଦୁଇ ହଜାର ।

ନି: ପ୍ରା: ସ୍କୁଲର ମାଷ୍ଟ୍ର ଭାଇଟିକୁ ବିବାହ ଦେବାଲାଗି ତିନି ହଜାର । ବଡ଼ପୁଅର ବ୍ରତଘର ମଧ୍ୟ ସାରିଦେବି—ଆଉ ଦୁଇ ଝିଅଙ୍କ ବାହାଘର ଲାଗି ତାଙ୍କ ନାମରେ ଡାକଘରେ କିଛି ସାଇତିଦେବି ।

ଯଦି ପାଇଯାଏ ପଚିଶ ହଜାର ?

ତେବେ—ଉପରଲିଖିତ ଖର୍ଚ୍ଚ ମଧ୍ୟରୁ କେବଳ ସ୍ତ୍ରୀଙ୍କ ପାଇଁ ସୁନାଚୂଡ଼ି ଯୁଗଳ ବଢ଼ିବ । ଦୁଇ ଝିଅଙ୍କର ବାହାଘର ଲାଗି ଆଗରୁ ସୁନା କିଣି ଅଳଙ୍କାର ଗଢ଼େଇ ରଖି-ଦେବି । ଆଉ ଗ୍ରାମରେ ରହିବା ପାଇଁ ଖଣ୍ଡିଏ ଘରବଖରିଆ କୋଠାଘର ।

କାରଣ- ଅଙ୍କ ଏହା ଉପରକୁ ମୁଁ ବଢ଼ିପାରୁନଥିଲି । ପଚିଶ ହଜାର ଟଙ୍କା ପର୍ଯ୍ୟନ୍ତ ମୁଁ ମୋ କଳ୍ପନାରେ ଦେଖିପାରୁଥିଲି—୨୫୦୦୦—ପଚିଶରେ ତିନଟା ଶୂନ—ପଚିଶ ଟଙ୍କାକୁ ହଜାରେ ଥର ଉଚ୍ଚାରଣ କଲେ ସଂଖ୍ୟାଟାକୁ ବୁଝିହେଉଛି । ପଚିଶ ଟଙ୍କାର କଳ୍ପିତ ଓ ଯୋଜିତ ଖର୍ଚ୍ଚର ହିସାବକୁ ହଜାରେ ଗୁଣ ବଢ଼ାଇଦେଇ ଟଙ୍କାଟାକୁ ଖର୍ଚ୍ଚ କରି ହଉଥାଇ ପାରୁଛି । ତା'ଛଡ଼ା— ପଚିଶ ହଜାର—ଏଇଟା ବି ଏତେ ବେଶୀ କଠିନ ଓ ଅନନ୍ତ ଧ୍ୱନି-ବିଶିଷ୍ଟ ନୁହେଁ । ଏମିତ ଅସାଧ ସଂଖ୍ୟା ନୁହେଁ—ଏଇ "ପଚିଶ ହଜାର"ଟା ।

କିନ୍ତୁ ପାଞ୍ଚ ବର୍ଷଯାଏ—କେବଳ ଆଶାକରିବା ହିଁ ସାରହେଲା । ଟଙ୍କା ତିନିଶ' ଭଳି ଖର୍ଚ୍ଚ କରି ଟିକେଟ କିଣିଛୁ ପାଞ୍ଚବର୍ଷଯାଏ । ପଚିଶ ହଜାର ଦୂରର କଥା—ମୋର ମୌଳିକ ସଂଖ୍ୟା ଆଶା ଟଙ୍କା ପଚିଶଟା ମଧ୍ୟ ମୋ ଭାଗ୍ୟକୁ ଉଠିଲା ନାହିଁ ।

ଆଶା ଗ୍ରୁଡ଼ିଦେଲି । ସେଦିନ ପ୍ରତିଜ୍ଞା କଲି—ଆଉ ଲଟେରି ଟିକେଟ କିଣିବିନାହିଁ ।

ସେହିଦିନୁଁ ମଧ୍ୟ ଆଉ କେବେ ଲଟେରି କିଣିଲିନାହିଁ । ଲଟେରି କଥା ମଧ୍ୟ କ୍ରମେ ଭୁଲିଗଲି । ଲଟେରି ପାଇଲାବାଲାଙ୍କୁ ମଧ୍ୟ ଈର୍ଷା କଲିନାହିଁ । ପାଆନ୍ତୁ ସେମାନେ—ଯେଉଁମାନେ ପାଇବାକୁ ଜନ୍ମ ହୋଇଛନ୍ତି ।

କିନ୍ତୁ ଆର୍ଥିକ ସଙ୍କଟ ମାଡ଼ିପଡ଼ୁଥାଏ ଦିନକୁ ଦିନ । କୁଟୁମ୍ବର ସମସ୍ୟା ବଢ଼ି-ଗ୍ଲୁଲିଥାଏ । ଘର-ସଂସାର ଚଳାଇବା ପତ୍ନୀଙ୍କ ପକ୍ଷରେ ମହାବିଡ଼ମ୍ବନା ହୋଇ ପଡ଼ୁଥାଏ । ଅଧିକ ଅର୍ଥ କମାଇବା ଲାଗି—ମୁଁ ଅଧିକ ପରିଶ୍ରମ କଲି । ସକାଳେ ଟିଉସନ୍‌ଟିଏ—କୋଡ଼ିଏ ଟଙ୍କା—ରାତିରେ ଜଣକ ଗୋଦାମରେ ହିସାବନିକାଶ ତନଖି କରେ—ତିରିଶି ଟଙ୍କା । ଏମିତି କଷ୍ଟେମଷ୍ଟେ ଚଳୁଥାଏ ସଂସାର । ଇତିମଧ୍ୟରେ ଟିକିଏ ଉପର ସ୍ତରକୁ ପ୍ରମୋସନ ମଧ୍ୟ ହୋଇଥାଏ । ଆଉ ପଚାଶିଟି ଟଙ୍କା ଅଧିକ ପାଇଲି । ପଡ଼ିଉଠି—ଗୁରୁଲଘୁ ନିଃଶ୍ୱାସରେ ସଂସାର ଚଳୁଥାଏ—ଧାର ଉଧାର—ପୁଣି ଶୁଝା । ରୋଗ ବଇରାଗ—ପୁଣି ସ୍ୱାସ୍ଥ୍ୟ—ଏମିତି ସଂସାର ଜୁଆରିଆ ଧରୁଥାଏ—ଭଟ୍ଟା ପଡ଼ୁଥାଏ । ପ୍ରତିବନ୍ଧକ ଆସେ ବେଳେବେଳେ ଢେଉର ପାହାଡ଼ ଭଳି—ତାକୁ ଶିର ଭଳି ଗ୍ରୁଡ ପଟାଇ ଦେଇ ହୁଏ ନାହିଁ; ତା'ରି ସଙ୍ଗେ ମିଶି ତାକୁ ଡେଇଁଯିବାକୁ ହୁଏ । ବେଳେବେଳେ ଢେଉ ହଟିଯାଏ—ବେଳେବେଳେ ମୁଁ ହଟିଯାଏ । ପୁଣି କେବେ ମୁହାଁମୁହିଁ ହେଉ—ଢେଉ ଆଉ ମୁଁ—ଗ୍ରଲେ ସଂସାର ।

ଏଇ ଭଲ !

ହଁ—ଏଇ ବେଶ୍ ! ଆପଣାର ବାହୁବଳ ଆଉ ଅସ୍ତ୍ର ଧରି ଦୁର୍ଭାଗ୍ୟ ସଙ୍ଗେ ମୁହାଁମୁହିଁ ଯୁଦ୍ଧ କରିବା । ବେଳେବେଳେ ହାରିବା—ଆଉ ବେଳେବେଳେ ଜିତିବା । ଏଥିରେ ଏକ-ପ୍ରକାର ଆନନ୍ଦ ଅଛି—ଅଛି ସନ୍ତୋଷ । ମଝିରେ ଯଦି ଦୈବବଳରେ ଆକସ୍ମିକ ନାଟକୀୟ ଭାବେ କେହି ଆସି ତୁମ ହାତରୁ ଅସ୍ତ୍ର ଛଡ଼ାଇ ନେଇ କହେ—"ଉଠ୍ ତୁ ! ମୁଁ ଯୁଦ୍ଧ କରି ତୋ'ର ଦୁର୍ଭାଗ୍ୟକୁ ଏକାଠେଙ୍ଗାକେ ପିଟି ଛତୁକରିଦେବି" ଏବଂ ସଙ୍ଗେ ସଙ୍ଗେ ଏକା-ଠେଙ୍ଗାକେ ପିଟି ଦୁର୍ଭାଗ୍ୟକୁ ସତକୁ ସତ ଛତୁ କରି ବାଲିରେ ମିଶାଇଦିଏ—ତେବେ ମୋର ଧାରଣା—ବିପଦ ହୁଏତ ଚିରଦିନଲାଗି ନିର୍ବିଘ୍ନରେ ଉଭେଇଯିବ; ମାତ୍ର ଠିକ୍ ସେହିଦିନ ହିଁ ନିକଟେଇ ଆସିବ ତୁମର ମହାଯାତ୍ରାର ଦିନ—ସବୁ ଶେଷ ହୋଇଯିବାର ଦିନ । ତୁମର ଭଲା ଆଉ କରିବାର ଥିବ କଣ ?

ପାଣ୍ଡବମାନେ ଯଦି ଯୁଦ୍ଧ ନକରି ଶ୍ରୀକୃଷ୍ଣଙ୍କୁ କହିଥାନ୍ତେ—"ତୁମେ କୌରବଙ୍କୁ ସଂହାର କରି ଆମକୁ ସିଂହାସନ ଦିଅ"—ତେବେ ଏକ ସେକେଣ୍ଡକେ ସୁଦର୍ଶନଚକ୍ର ସବୁ ସମାଧାନ

କରିଦେଇଥାନ୍ତା; ମାତ୍ର ତା'ପରେ କଣ ହୋଇଥାନ୍ତା ? ତା' ନକରି ଭୀମ, ଅର୍ଜୁନ, ନକୁଳ, ସହଦେବ, ଯୁଧିଷ୍ଠିର ଯେତ୍ତା ଅସ୍ତ୍ର ଧରି ଯୁଦ୍ଧକଲେ ଆପଣା ବାହୁବଳକୁ ଆଶ୍ରାକରି । ଅବଶ୍ୟ ଦୈବୀ ସହାୟତା ଦରକାର—ସଙ୍କଟବେଳେ କାମ୍ୟ । ଯେମିତି ହେଇଚି ସେ ଦିନ...

ପୁଅର କଲେଜରେ ଆଡ୍‌ମିସନ୍ ହେବ—ଟଙ୍କା ଶହେଟି ଦରକାର । ପାଖରେ ଅଧଲାଟିଏ ନାହିଁ । ପୂର୍ବ କାରଜମାନ ଶୁଝା ହୋଇନାହିଁ । ଆଉ ଧାର ମିଳିବାର ଆଶା ନାହିଁ କୋଉଠୁ । ଏହି ମହାସଙ୍କଟବେଳେ, ଆପଣ ଗାଲରେ ହାତ ଦେଇ ବସିଛନ୍ତି—କମ୍ପା ସ୍ୱରେ ପତ୍ନୀଙ୍କର "କଣ ଯୋଗାଡ଼-ଯନ୍ତ୍ର ହେଲାଟିକି ?" ପ୍ରଶ୍ନର ଉତ୍ତରରେ ଆପଣ କେବଳ ଏକ ନିରର୍ଥକ ଧୂଆଁଳିଆ ଆଧ୍ୟାତ୍ମିକ ଉତ୍ତର ଦେଉଛନ୍ତି—"ହିଁ—ଦେଖାଯିବ—କର୍ତ୍ତାର ଯାହା ଯେତେବେଳେ ବିହିଦ ଥିବ; ହେବ ।" ଠିକ୍ ଏଇ ସମୟରେ ଦେବତାର ଆଶୀର୍ବାଦ ନେଇ ଆସିଲା ଗୋଟାଏ ଚିଠି । ଗ୍ରାମରୁ ଲେଖିଛି ଦିନେଇ ସାହୁ ମହାଜନ । ତା'ର ଗୋଟାଏ ବିରାଟ ପ୍ରାସାଦ ତିଆରି ହେଉଛି ଗ୍ରାମରେ । "ପ୍ରିୟ ଅମୁକ ବାବୁ, ଆପଣଙ୍କର ମହୁଲିଆ ଡିହ ଉପରେ ଯେଉଁ ଗୋଟାଏ ବରଗଛ ଥିଲା—ତାକୁ କଟାଇ-ଦେଉଛୁ । କହିଥିଲ—ଆଷାଢ଼ରେ କାଟିବ ବୋଲି---ମାତ୍ର ବର୍ଷା ପୂର୍ବରୁ ଇଟାଗୁଡ଼ିକ ପୋଡ଼ା ନହେଲେ ଅସୁବିଧା ହେବ । କଥିତମତେ ଦେଢ଼ଶହ ଟଙ୍କା ଅଦ୍ୟ ମନିଅର୍ଡ଼ର ଯୋଗେ ପଠାଇଲି । ଅନ୍ୟଥା ଭାବିବେ ନାହିଁ । ଶ୍ରୀଜଗନ୍ନାଥଙ୍କ କୃପାରୁ ଆପଣ ସର୍ବେବ କୁଶଳରେ ଥିବେ ।" ଇତି

ବାହ୍—ଏଇ ମୁହୂର୍ତ୍ତରେ ଆପଣ ନିଶ୍ଚୟ ଭାବିବେ ଯେ, ବହୁ ଦିନରୁ ପରିତ୍ୟକ୍ତ ଡିହଟି ଉପରେ କେଉଁ ଅନାଦିକାଳରୁ ପ୍ରାକୃତିକ ନିୟମରେ ଉଦ୍‌ଭୂତ, ବର୍ଦ୍ଧିତ ବଟବୃକ୍ଷଟି ଯେମିତି ଦେବତାର ଆଶୀର୍ବାଦରୁ ହଠାତ୍ କଳ୍ପବୃକ୍ଷ ପାଲଟିଗଲା ! ଯେମିତି ଅନାମଧେୟ ଅପାଂକ୍ତେୟ ଅବହେଳିତ ନିମଗଛଟା ମହାଦାରୁ ପାଲଟିଯାଇ—ମହାସମାରୋହରେ ପୂଜିତ ହୋଇ ପୁରୁଷୋତ୍ତମ ବ୍ରହ୍ମହୋଇଯାଏ ନବକଳେବର ଲାଗି !!

ଏ ଅବଶ୍ୟ ଅଲଗା କଥା । ଘୋର ସଙ୍କଟ କାଳରେ ଏମିତି ଦୈବୀ ସାହାଯ୍ୟ ପୁରୁଷାର୍ଥକୁ ଉତ୍ସାହିତ କରିଥାଏ । ଜୀବନ-ସଂଗ୍ରାମରେ ସଙ୍କଟଗ୍ରସ୍ତ, ନିତ୍ୟପରାହତ, ନିତ୍ୟ-ଯୁଦ୍ଧରତ, ନୈରାଶ୍ୟଜର୍ଜର, ଛିନ୍ନବିଚ୍ଛିନ୍ନ ସଂଗ୍ରାମୀପୁରୁଷର ମନରେ ଏହା ଆଧ୍ୟାତ୍ମିକ ଚେତନା ମଧ୍ୟ ଉନ୍ମେଷିତ କରିଦିଏ । ମନ ହୁଏ—ଆଣ୍ଠୁମାଡ଼ି ପ୍ରାର୍ଥନା କରିବାକୁ ସଜଳ ଆଖିରେ—"ହେ କରୁଣା ବାରିଧି ! ପ୍ରଭୋ ! ତୋର ମହିମା ଅବା କେ କଳିପାରିବ ? କିଏ ବା କଳିବ ତୋର କୃପାସିନ୍ଧୁ !

କିନ୍ତୁ ଅଢ଼େଇଶ' ଟଙ୍କା ମାତ୍ର ଉପାର୍ଜନକ୍ଷମ, ପଇଁଚାଳିଶି ବର୍ଷ ବୟସ୍କ ନିତ୍ୟ ଆର୍ଥିକ ପୀଡ଼ାଗ୍ରସ୍ତ ବ୍ୟକ୍ତି ପକ୍ଷରେ ରାତାରାତି ଲକ୍ଷେ ପଚିଶ ହଜାର ଟଙ୍କାର ଲଟେରୀକୁ ହଠାତ୍ ଲାଭ କରିବା—ହୁଏତ ତାକୁ ଚିରଦିନଲାଗି ନିର୍ବେଦ କରିବ—ନହୁବା ତାର ଆକସ୍ମିକ ମୃତ୍ୟୁର କାରଣ ହେବ । ଏଇ ଧରନ୍ତୁ—ହଠାତ୍ ହାର୍ଟଫେଲ୍ କରିଯିବ '

ଓ !! ଆପଣ ଭାବୁଛନ୍ତି—କେମିତି ହେବ ? ମୋର ସୁଲେଖକ ବନ୍ଧୁ ଶ୍ରୀ ଚନ୍ଦ୍ରଶେଖର ରଥ ମଧ୍ୟ ତାହାହିଁ କହନ୍ତି । ସେ କହନ୍ତି—"ଲକ୍ଷେ କଣ ? ମୁଁ ପଚାଶ ଲକ୍ଷ ଟଙ୍କା ମଧ୍ୟ ସମ୍ଭାଳିଯାଇପାରେ---ହଜମ କରିଦେଇପାରେ ।"

ମୁଁ ପଚାରେ—ପଚାଶ ଲକ୍ଷ ଟଙ୍କା ତୁମେ କେମିତି ଖର୍ଚ୍ଚ କରିବ—ଦେଖି ଗୋଟାଏ ଯୋଜନା ଦେଲ !!

ସେ ବହୁତ ସମୟ ଦେଇ ହିସାବ କରନ୍ତି । ମାତ୍ର ପୁଣି ଦଶ ଲକ୍ଷ ଟଙ୍କା ବଳିପଡ଼େ—ଯାହାକୁ ଦେଇ କଣ କରାଯିବ ସେ ହଠାତ୍ କହିପାରନ୍ତି ନାହିଁ । କହନ୍ତି—ହେଉ ! ରାତିଟା ସମୟ ଦିଅ—ମୁଁ କାଲି କହିବି ।

ମାତ୍ର ଆମ ଅଫିସର ସାଂଘାତିକ ବୁଦ୍ଧିରେ ସାଗର ସଦୃଶ ଶ୍ରୀ ବଂଶୀଧର ଦାଶ ଗୋଟାଏ କଥା କହନ୍ତି—ସେ କହନ୍ତି—ଯେତେ ଲକ୍ଷ ଟଙ୍କା ପାଉଛ ଆଗ ପାଇଯାଅ । ତା'ପରେ ତାକୁ ଭାଗ ଭାଗ କରି ବିଭିନ୍ନ ବ୍ୟାଙ୍କରେ ରଖିଦିଅ । ଇନ୍‌କମ୍ ଟ୍ୟାକ୍ସବାଲାଏ ଯାହା ନେବେ—ନେବେ । ସେଇ ଟଙ୍କାର ସୁଧରୁ ଚଳ—ଜମେ ଘର ତିଆରି କର--ଝିଅ ବାହାଘର କର—ପୁଅକୁ ବିଲାତ ପଠାଅ···

ସୁତରାଂ ସମାଧାନ ଅବଶ୍ୟ ଅଛି । ଏଇ ସଂସାରରେ ତେହୁଁ ବଳି ତେହୁଁ ବଳି କରିତ୍‌କର୍ମାମାନେ ଅଛନ୍ତି ! ଲକ୍ଷ ଲକ୍ଷ ଟଙ୍କାର ଲକ୍ଷପତିମାନେ ଅଛନ୍ତି । କୋଟି କୋଟି ଟଙ୍କାର ମାଲିକ କୋଟିପତିମାନେ ମଧ୍ୟ ଅଛନ୍ତି । ମାତ୍ର ହଠାତ୍ ରାତାରାତି ଲକ୍ଷପତି ବା କୋଟିପତି ହେବାର ସକ୍ ବା ଧକ୍କା ସମ୍ଭାଳିବାକୁ ସମସ୍ତଙ୍କ ଛାତି ପ୍ରସ୍ତୁତ ନୁହେଁ । ଯେଉଁମାନେ ରକେଟ୍‌ରେ ବସି ମହାଶୂନ୍ୟକୁ ଯାଉଛନ୍ତି, ସେମାନଙ୍କୁ ବହୁଦିନ ଧରି ତାଲିମ୍ ଦିଆଯାଏ । ଶୋଇଲା ଲୋକକୁ ନଜଣାଇ ନଶୁଣାଇ ହୁ-କିନା ମହାଶୂନ୍ୟକୁ ଠେଲି ଦେଲେ • ହିଅ—ତା' ମଧ୍ୟ ଅସମ୍ଭବ ନୁହେଁ । ଏ ସମାଜରେ "ସାତଚକଟା, ପୋଲୁଅ ଘଣ୍ଟା, ବିଭୂତିଭୂଷଣ ଗାଲସିକଟା—ଚଲ ପ୍ରସାଦରୁ ଚଉଦଭୁବନ ଭ୍ରମଣ" କରିଥିବା ଗଡ଼ିଶାମାନେ ଅଛନ୍ତି । ଭମି, ଭମିଙ୍ଗିଲମାନେ ମଧ୍ୟ ଅଛନ୍ତି । ଅଥଚ ସେମାନଙ୍କୁ ହଠାତ୍ ଆକାଶକୁ ଉଡାଇଦେଲେ ତାଙ୍କ ହାର୍ଟ ଫେଲ୍ କରିବ । ଶୁଣିବେ କି ଘଟଣାଟିଏ ?

ଆମ ଗାଁର ଦରୁଠିଁ ବଡ଼ ମହାଜନ ଧନେଇ ସାହୁର ବାପ ଶମ୍ଭୁ ସାହୁଙ୍କ କଥା ମୁଁ ପିଲାଦିନୁ ଶୁଣିଛି । ତା' ଘରେ ପାଞ୍ଚଟି ଗରା ରୁପା ଟଙ୍କା—ଆଉ ଦୁଇଗରା ସୁନା ଅସରଫି ପୋତା ହୋଇଥିବାର ଜନରବ ଓ ଜନଶ୍ରୁତି ମୋ କାନରେ ବହୁବାର ବାଜିଛି ।

ଶମ୍ଭୁ ସାହୁ ସେତେବେଳେ ଧୋଡ଼ିଆଘୋଡ଼ା ଓ ବଳଦ ଉପରେ ବିରି, ମୁଗ, ମାଣ୍ଡିଆ, ଧନିଆ ଆଦି ଲଦି ବ୍ୟବସାୟ କରୁଥିଲେ । ସେଇ ବ୍ୟବସାୟରୁ ସାତଗରା ସୁନା ରୁପା କିପରି ଅର୍ଜନ କରାଯାଇପାରେ ? କିନ୍ତୁ ଏ ପ୍ରଶ୍ନର ସହଜ ସମାଧାନ ହୋଇଯାଏ ଜନ୍ମ ଗୁଜବରୁ ।

ଥରେ ଶମ୍ଭୁ ସାହୁ ତାଙ୍କ ବିଲ ଆଡ଼କୁ ବହୁଦିନ ପରେ ଯାଇଥିଲେ । ରାତି ପ୍ରାୟ ଦଶଟା ହେବ । ପୂର୍ବରୁ ଅଳ୍ପାଏ ବର୍ଷା ହୋଇ ଛାଡ଼ିଯାଇଛି । ଝିଙ୍କାରି ଡାକୁଛନ୍ତି—ହଠାତ୍ କିଆବୁଦା ପାଖରୁ ଗୋଟାଏ ଜକଜକ ଆଲୁଅ ଦେଖି ଶମ୍ଭୁ ସାହୁଙ୍କ ଆଖି ଜଳିଉଠିଲା । ସେ ତାକୁ ସାବଧାନରେ ନିରୀକ୍ଷଣ କଲେ । ଆଲୁଅଟି ନାଲି-ହଳଦିଆ ମିଶା । କ୍ରମେ ଆଲୁଅମୁଣ୍ଡାଟି ଖୁବ୍ ଧୀରେ ଧୀରେ ଅଗ୍ରସର ହେବାକୁ ଲାଗିଲା । ବାଡ଼ କଡ଼େ କଡ଼େ—ଠିକ୍ ଗୋଟାଏ କଇଁଛର ଗତିଛନ୍ଦରେ ଆଲୁଅଟି ଚାଲିଛି । ଶମ୍ଭୁ ସାହୁ ନିଃଶ୍ୱାସ ବନ୍ଦକରି—ଆଖି ଅଧୁକରି—ସାବଧାନରେ ତାକୁ ନିରୀକ୍ଷଣ କଲେ । ତା' ପରେ ମନେ ମନେ ବଡ଼ ଉଲ୍ଲସିତ ହୋଇ ଠିଆହୋଇ ପଡ଼ିଲେ । "ହେ ମା' ଭୂତାମଚଣ୍ଡୀ ! ତୋ'ର କୃପା !" ଏତିକି କହି ଧୀରେ ଧୀରେ ପାଦ ଚପିଚପି ସେ ଚାଲିଲେ ପଛଆଡ଼କୁ । ପଛଆଡ଼େ ଗୋବର ଖାତ । ସେଥିରୁ କୁଣ୍ଡେ ଭଳି ଗୋବର ନାକଧରି ସେ ପୁଣି ସେଇ ଧୀର ଅପସୃୟମାନ ଯାମୁକଗତି ବିଶାଳ ଭୌତିକ ଅଲୌକିକଟି ପଛେ ପଛେ ପାଦ ଚପି ଚପି ଯାଇ ହଠାତ୍ ତା' ଉପରକୁ ଗୋବରତକ ପକାଇ ତାକୁ ମାଡ଼ିବସିଲେ । ବାସ୍...

ସେଇଟି ହେଉଛି—'ଯଖ' ନାମକ ଏକ ଆଧିଭୌତିକ ଓ ଆଧିଦୈବିକ ମିଶା ସଙ୍କର ଜାତୀୟ ପ୍ରାଣୀବିଶେଷ । କଥିତ ଅଛି—ବହୁକାଳରୁ ଭୂମିରେ ପୋତା ହୋଇଥିବା ସ୍ୱର୍ଣ୍ଣରୌପ୍ୟାଦି ଧାତୁ ପ୍ରାକୃତିକ କାରଣରୁ ରୂପାନ୍ତରିତ ହେଉଁ ହେଉଁ ଗୋଟିଏ ମେରୁଦଣ୍ଡହୀନ ଲୁତୁପୁତୁ ଉଜ୍ଜ୍ୱଳ ପ୍ରାଣୀରେ ପରିଣତ ହୋଇ ବର୍ଷାକାଳର ଅଧରାତିରେ ଏହିଭଳି ଗହୀର ବିଲରେ ବାଡ଼ କଡ଼େ କଡ଼େ ଶେଣ୍ଢାଗତିରେ ଧୀରେ ଧୀରେ ଅଗ୍ରସର ହୁଏ ।

ଯାହାର ସୌଭାଗ୍ୟ ଏହି 'ଯଖ' ଭଳି ଉଜ୍ଜ୍ୱଳ—ଯାହା ଉପରେ ଭୂତାମଚଣ୍ଡୀଙ୍କର କୃପା ଅକସ୍ମାତ୍ ବର୍ଷିପଡ଼େ—ସେଇ ତା'ର ସାକ୍ଷାତ୍‌ପାଏ ହଠାତ୍ । ଆଉ—ଏଇମିତି ଗୋବର ପକାଇ ତାକୁ କାବୁକରିଯାଏ । ଗୋବରଲିପ୍ତ ହେଲେ—ତାହା ପୁଣି ଜୀବନଶୂନ୍ୟ ହୋଇ ସୁନା ଧାତୁରେ ପରିଣତ ହୋଇଯାଏ ।

ଶମ୍ଭୁ ସାହୁ ଏହିପରିଭାବେ ଲକ୍ଷପତି ହୋଇଥିଲେ ।

ପାଠକେ ! ସମ୍ପୂର୍ଣ୍ଣ ଲକ୍ଷ ଟଙ୍କାର ଲଟେରୀ ଜିଣି—ତାକୁ—ଅର୍ଥାତ୍ ତତ୍ଜନିତ ସେଇ ହାର୍ଦ୍ଦିକ "ହକ୍"କୁ ବା ଧକ୍କାକୁ ଛାତିରେ ସହ୍ୟ କରିବା ଅପେକ୍ଷାକୃତ ସହଜ । ମାତ୍ର ବର୍ଷାରାତି—ଅନ୍ଧାରିଆ ଗହୀର ବିଲରେ ଏକୁଟିଆ ଝିଙ୍କାରି ବସୁବସୁ—ଏକ ଗତିଶୀଳ ଆଧିଦୈବିକ ଅଲୌକିକବିଶେଷ ପଛରେ ଗୋବରହସ୍ତେ ଧୀରଗତି ଅନୁସରଣ କରିବାଭଳି ଛାତି ରାଜନୀତି କରିବାର ଓ ବ୍ୟବସାୟ କରିବାଲୋକଙ୍କୁ ଛାଡ଼ିଦେଲେ—ଆମଭଳି କିରାଣି, ମାଷ୍ଟ୍ର ଆଦି ସ୍ୱଳ୍ପପ୍ରାଣ ଚାକିରିଆମାନଙ୍କର ଆଦୌ ନାହିଁ—ତା' ସେ ବିଶାଳକାୟ ଦିଗ୍‌ଗଜ ହଥବାକୁ ହୁଅନ୍ତୁ ବା କ୍ଷୀଣକାୟ ଗଣେଶବାହନ ବଣିବାକୁ ହୁଅନ୍ତୁ !!

ସେଇଥିଲାଗି ଲଟେରୀରେ ବିଜୟୀ ହୋଇ ଏଭଳି ଆକସ୍ମିକ ଲକ୍ଷପତି ହେବାର ଆକାଂକ୍ଷା ମୁଁ ଛାଡ଼ିଦେଇଥିଲି । ମାନେ ଖାସ୍ ଏଇ 'ସକ୍' ବା ଧକ୍କା ସମ୍ଭାଳିବା ମୋର ସାଧ୍ୟାତୀତ ବୋଲି !

କିନ୍ତୁ ଏଥିମଧ୍ୟରେ ଆଉରି ଗୋଟିଏ ଘଟଣା ଘଟିଲା—ଯାହାକି ଏଭଳି ଲଟେରି ସମ୍ପର୍କରେ ମୋର ସମସ୍ତ ଗତାନୁଗତିକ ଧାରଣା ବଦଳାଇ ଦେଲା ଓ ମନୁଷ୍ୟର ସ୍ୱପ୍ନ ବିଷୟରେ ମଧ୍ୟ ମୋର ଖୁବ୍ ଉଚ୍ଚ ଧାରଣା ହୋଇଗଲା—ତା' ସେ ଯେଉଁ ଶ୍ରେଣୀର ସ୍ୱପ୍ନ ହେଉ ପଛେ । ଘଟଣାଟି କହେ···

ଆମ ଅଫିସର ପଚିଶ୍‌ଟଙ୍କିଆ * ଟଙ୍କା ଦରମାବାଲା ପିଅନ କୃଷ୍ଣ ନାୟକ—ଓରଫ୍ କୃଷ୍ଣଧ୍ୱଜ ନାଏକ । କୃଷ୍ଣର ବୟସ ପଚାଶ ଉପରକୁ । ଗେଡ଼ାହୋଇ ଲୋକଟିଏ । ତା'ର ପୁଅ ମଦନ ମୋହନ ନାଏକ—ବୟସ ତେଇଶି ଚବିଶି ଭିତରେ—ଗୋରା ହୋଇ ପତଳା ଚେହେରା—ନାକତଳେ ସରୁ ନିଶ—ହାତରେ ଘଣ୍ଟା । ବାପପୁଅ ଦୁହେଁ ଆମ ଅଫିସରେ ମୁକରର ହୋଇଛନ୍ତି । କୃଷ୍ଣ ହେଉଛି ଚପ୍‌ରାସି—ଆଉ ତା'ର ପୁଅ ମଦନ ହେଉଛି ପିଅନ । କୃଷ୍ଣଧ୍ୱଜର ସଂସାର ଏତିକି ଟଙ୍କାରେ ଚଳେନାହିଁ—ସେ ଦୁଇଟି ଗାଈ ଆଣି ରଖିଥାଏ ଗ୍ରାମରୁ । ଦୁଇସେର ଦୁଧରେ ଦୁଇସେର ପାଣି—ଗାଏ ମୋଟ ଚାରିସେର । ଚାରି ଟଙ୍କା । ସଂସାର ଚଳେ ଏକ ପ୍ରକାର । କୃଷ୍ଣଧ୍ୱଜ ବେଶ୍ ବିଜୟୀ—ଧୀର ସ୍ଥିର—କର୍ତ୍ତବ୍ୟକର୍ମନିପୁଣ—ଆସ୍ଥାଶୀଳ ଲୋକ । ପୁଅ ମଦନ ଆଧୁନିକ ଯୁବକ । ତା'ର ମନରେ ଧନୀ ଆଉ ମାନୀ ହେବାଲାଗି ଅନେକ ସ୍ୱପ୍ନ । ସେ ବହୁଦିନ ଧରି ଲଟେରି ବ୍ୟବସାୟ କରେ । ବହୁ କଂପାନୀରେ ଲଟେରି ସେ କିଣାବିକା କରେ । ଜଳନ୍ଧରସିଟିରୁ ବିଜ୍ଞାପିତ ବହୁ ବଶୀକରଣ କବଚ—ସାଲି କମ୍ବଳ—ରିଷ୍ଟୱାଚ୍—ପାଞ୍ଚଟଙ୍କାରେ ଅଲ୍ ଉଏଭ୍ ଟ୍ରାନ୍‌ଜିଷ୍ଟର୍-ଆଦି କାରବାରରେ ମଧ୍ୟ ସେ ମାତିଥାଏ । ମାତ୍ର କେବେ ସେ କିଛି ଲାଭ ପାଇନାହିଁ । ତଥାପି ସେ ଆଶା ଛାଡ଼ି ନଥାଏ—ଛାଡ଼ି ନଥାଏ ।

ଦିନେ ତାକୁ ପଚାରିଲି—ହଇଏ ମଦନ ! କାହିଁକି ମାହାଲିଆ ଏଥିରେ ମାତିଛ ? ତୁମେ ଆମେ କଣ ସ୍ୱାକୁ ପାଇବା ? ଦେଖୁଛ ତ ? ପ୍ରତି ବର୍ଷ ଯୋଉ ଫଳସବୁ ବାହାରୁଛି—କୋଉ କୋଉ ଅଞ୍ଚଳର କିଏ ସବୁ ପାଉଛନ୍ତି ? ଆମ୍ବାଲାର ଅମୁକ ସିଂ—ଜଳନ୍ଧରର ଅମୁକ ରାୟ—ଲକ୍ଷ୍ନଉର ଅମୁକ ଗୁପ୍ତ—ଦରଭଙ୍ଗାର ଅମୁକ ମୁଖାର୍ଜି—ହାଇଦରାବାଦର ଅମୁକ ରାଓ ନରସିଂହମ୍···

ମଦନ ଗୋଟାଏ ଲିଷ୍ଟ ଦେଖାଇ କହିଲା—ନାହିଁ ଆଜ୍ଞା ! ଏଇ ଦେଖନ୍ତୁ—ପ୍ରତାପଗଡ଼ କଲେଜ ଲଟେରିର ଓଣେଇଶ ଛପନ ଫଳାଫଳ—ପୁରୀର ଅମୁକ ସାହୁ, ଯାଜପୁରର ଅମୁକ ସେନାପତି, ବାଣପଦାର ଅମୁକ ଭଂଜ··· ଆଉ ଆମ ଗାଁର ସରି ସମୁକ ନାହାକ ଏବର୍ଷ ପାଇଗଲା ପଚଶ ହଜାର ଟଙ୍କା !!!

ମଦନର ଆଖିରେ ସ୍ୱପ୍ନ ଉଜଲଉଠେ । ତା'ର ଓଠ ଅଦ୍ଧ ଅଉ ପିଛିଲ

* ୧୯୫୮ ମସିହା ବେଳକୁ ପିଅନମାନଙ୍କ ଦରମା ପ୍ରାୟ ସେତିକି ଥିଲା ।

ଦେଖାଯାଏ । ତା'ର ମନେହୁଏ—ସୌଭାଗ୍ୟର ପାଟହାତୀ ସୌରାଷ୍ଟ୍ର, ପାଟଳିପୁତ୍ର, ମଗଧ, ଅଙ୍ଗ, ବଙ୍ଗ ଆଦି ରାଜ୍ୟ ଅତିକ୍ରମ କରି ବର୍ତ୍ତମାନ ତା' ଗ୍ରାମ ଗୋହିରରେ ପଶିଲାଣି । ତା' ପାଖକୁ ଆସିବାକୁ ଆଉ କେତେ କ୍ଷଣ ?

ସତକୁ ସତ ଆମ ଗାଁର କେଳୁ ପ୍ରଧାନ ମଧ୍ୟ ସେ ବର୍ଷ ପାଇଯାଇଥାଏ ଦଶ ହଜାର ଟଙ୍କା । ସେ ଆମର ଭାଗ୍ୟସୂତ୍ର ଧରିଥିଲା । ତା' ପାଇବା ଦେଖି ମଧ୍ୟ ମୋ ସ୍ତ୍ରୀ ଏଇ ଲଟେରିର ସଫଳତାରେ ଆଶା ଓ ସ୍ୱପ୍ନ ଦେଖିଥିଲେ । ଆଉ ମୋ ସଙ୍ଗେ ଲଗେଇଥିଲେ—"ଆମର ଏକାଥରେ ପାଞ୍ଚୁଟା ଟିକେଟ୍ କିଣିଦିଅ ।"

କୁଣ୍ଠଧ୍ୱଜ ଆଉ ତା'ର ପୁଅ ମଦନର ଏଇ ଲଟେରି ବ୍ୟବସାୟପ୍ରବଣତା ଦେଖି ମୁଁ ଆଶ୍ଚର୍ଯ୍ୟ ହୁଏ । ଆଚ୍ଛା ଯଦି ସତକୁ ସତ—କୁଣ ପାଇଯାଏ ଲକ୍ଷେ ପଚିଶ ହଜାର ଟଙ୍କା—ତେବେ ତା'ର ପଞ୍ଚାବନ ଟଙ୍କିଆ ଗ୍ରୁଡ କିଣ ସମାଳି ପାରିବ—ଏତେ ଟଙ୍କା ପାଇବାର ସକ୍ ? ଫାଟିଯିବ ନାହିଁ ? ଲକ୍ଷେ ଟଙ୍କାର ଧକ୍କା ? ଇଲେ ବାପାଲେ !

କିନ୍ତୁ ଶୁଣନ୍ତୁ କଣ ହେଲା ?

ସେ ଦିନ ତ୍ରାହି ବଡ଼ ହାଡ଼ଟା ହେବ । ଖବର ପାଇଲି—କୁଣ୍ଠଧ୍ୱଜ ଷ୍ଟାଡ଼ିଏମ୍ ଲଟେରିର ପ୍ରଥମ ପୁରସ୍କାର ଜୟ କରିଛି । ମାନେ ଲକ୍ଷେ ଏଗାର ହଜାର ଟଙ୍କା । କୁଣ ପାଖକୁ—ଆମ ଅଫିସର ବଡ଼ ସାହେବଙ୍କ ପାଖକୁ—ଆଉ ଜିଲ୍ଲା କଲେକ୍ଟରଙ୍କ ପାଖକୁ ଏକା ଥରକେ ତିନୋଟା ଟେଲିଗ୍ରାମ୍ ଆସିଛି ।

ଖବର ଶୁଣୁ ଶୁଣୁ ମୋ ସ୍ତ୍ରୀ ହଠାତ୍ ବସିଲା ଥାନରୁ ଟଳିପଡ଼ିଲେ । ତାଙ୍କୁ ଚେତା କରାଇ ପଲଙ୍କରେ ଶୁଆଇଦେଲି । ବଡ଼ପୁଅକୁ କହିଲି—ଏଠି ବସ୍—ପଙ୍ଖା କରୁଥା । ଝିଅକୁ କହିଲି— ମା'ଅର ମୁହଁରେ ଅଦାରସ ଘିଅ ମାଲିସ୍ କରୁଥା ।

ବଜାର ଭିତରକୁ ବାହାରିଗଲି । ଜିଲ୍ଲାର ସଦର ମହକୁମା—ଛୋଟ ସହରଟିଏ । ଦେଖିଲି—ଦୋକାନ ବଜାରରେ ଶୋକର ଛାୟା ଖେଳିଯାଇଛି । ଆଲୋକ ସବୁ ମ୍ଳାନ—ତା'ଠାରୁ ମ୍ଳାନତର ଦୋକାନୀମାନଙ୍କର ମୁଖଚନ୍ଦ୍ରଗୁଡ଼ିକ । ସହରର ବିଶିଷ୍ଟ ଧନକୁବେର ରତନଲାଲ ସାହାଙ୍କର ଘର ଆଗରେ ଲୋକାରଣ୍ୟ । ଦୁଇଦୁଇଟା ଡାକ୍ତର ଲାଗିଛନ୍ତି ରତନଲାଲଙ୍କ ପିଛା—ଗୋଟାଏ ଅମ୍ଳଜାନ କୁମ୍ଭୀ ଖୋଲିଯାଇଛି । ସମବେତ ଜନତାର ମୁଖରେ ହାହାକର ।

କଥା କଣ ?

କୁଣ୍ଠଧ୍ୱଜ ନାହାକର ରାତାରାତି ଲକ୍ଷପତି ହୋଇଯିବାର ଦୁଃସମ୍ବାଦ ଶ୍ରବଣେ ତାରଣ, ମାରଣ, ଜାରଣ, ବଶୀକରଣ, ଉଚ୍ଚାଟନାଦି ବହୁ ଅସାଧ ସାଧନାରେ ସିଦ୍ଧାଗ୍ରଣୀ ବ୍ୟବସାୟୀ ରତନଲାଲଙ୍କର ଯେ ଚେତା ବୁଡ଼ିଯାଇଛି—ଆଉ ସେ ଚେତନା ଫେରୁନାହିଁ ।

ସେଠାରୁ ଫେରି କେତେଜଣ ସହକର୍ମୀଙ୍କ ଘରକୁ ଗଲି । ଘର ଭିତରକୁ ଯିବା ଆଉ ଦରକାର କଣ ? ଘରେ ଘରେ କାନ୍ଦବୋବାଳି । ଗୃହସ୍ଥମାନେ ଗାଲରେ ହାତ ଦେଇ

ହେଁଟମାଥ କରି ବସିଅଛନ୍ତି । ଅବଳାମାନଙ୍କର କରୁଣ ହୃଦୟଫଟା କ୍ରନ୍ଦନରେ ଗୃହାଙ୍ଗନ ସମେତ ଆକାଶ-ବତାସ ମୁଖରିତ । ଶିଶୁମାନେ ଧୂଳିଖେଳ ଛାଡ଼ି ଆତଙ୍କଗ୍ରସ୍ତ ହୋଇ ମ୍ରିୟମାଣ ବସିଅଛନ୍ତି ।

ଅଫିସର ବଡ଼ବାବୁମାନଙ୍କ ଘରଆଡ଼କୁ ଯାଉଛି—ଏମନ୍ତ ସମୟରେ ହଠାତ୍ ପଛରୁ ଜଣେ ସଁ ସଁ ହୋଇ ଆସି ପହଁଚିଲେ । ପଛକୁ ଚାହିଁ ଦେଖେ ତ କଲେକ୍ଟରଙ୍କ ଅଫିସ ସୁପରିନ୍‌ଟେଣ୍ଡେଣ୍ଟ ମକରଧ୍ୱଜ ବାବୁ । ପଚାରିଲି—ଖବର କଣ ମକରଧ୍ୱଜ ବାବୁ ?

ସଜଳ ଆଖିରେ ସେ ଉତ୍ତର ଦେଲେ—ଖବର ନୁହେଁ ହେ—ଦୁଃଖବର କୁହନ୍ତୁ । ଆସ-ଆସ—ତୁମ ଘରକୁ ଯାଇଥିଲି । କଲେକ୍ଟର ସାହେବ ଡକେଇଛନ୍ତି—ଆସ ମୋ ସାଙ୍ଗରେ ।

କଲେକ୍ଟର ସାହେବଙ୍କ କୋଠିକି ଚାହିଁ ଦେଖିଲି—ସାହେବ ଆଉ ମେମ୍‌ସାହେବ ଦୁହେଁ ବିଷଣ୍ଣହୋଇ ବସିଛନ୍ତି । ଯେମିତି ଗୋଟାଏ ବିଷମ-ସଙ୍କଟ, ଦୁଃସମ୍ବାଦ ଘଟିଯାଇଛି । ନମସ୍କାର କରିଅନ୍ତେ, ସାହେବ ପଚାରିଲେ—

ଖବର ଶୁଣିଲେ ?

ଆଜ୍ଞା !

ଆସନ୍ତା କାଲି ଦିନ ଦୁଇଟାରେ ଗୋଟିଏ ସଭାର ଆୟୋଜନ କରିବାକୁ ହେବ । ଆପଣମାନେ ଗୋଟିଏ ଶ୍ରେଷ୍ଠ ଶୋଭାଯାତ୍ରା ଯୋଗାଡ଼ କରିବେ । କୁଣଧ୍ୱଜକୁ ଫୁଲମାଳ ପକାଇ ସଭାସ୍ଥଳକୁ ନେବେ ।

ମୁଁ କହିଲି—ଏ ସବୁ ବ୍ୟବସ୍ଥା ଆଜ୍ଞା···

ହଁ—ଏହିପରି କରିବାକୁ ହବ—ଆଚ୍ଛା ତୁମେ ଯାଅ ।

ସାର୍ ! ସଭାପତି କିଏ ହେବ ?

ମୁଁ ନିଜେ !

ଆପଣ ?

ମକରଧ୍ୱଜ ବାବୁ ମୂର୍ଚ୍ଛା ହେବାଲାଗି ତଳେପଡ଼ିଯାଉଥିଲେ; ମାତ୍ର ମୁଁ ତାଙ୍କୁ ଟେକିନେଲି । ମେମ୍‌ସାହେବ ଆଗରୁ ଉଠିଯାଇଥିଲେ । ଏଥର ସାହେବ ମଧ୍ୟ ତଳକୁ ମୁହଁପୋତି ଘରଭିତରକୁ ପଶିଗଲେ ।

ମୁଁ ଦେଖିଲି—କେବଳ କଲେକ୍ଟର ସାହେବ ଓ ତାଙ୍କ ପତ୍ନୀ ନୁହନ୍ତି—ତାଙ୍କର ଖ୍ୟାପଣକାରୀ ଖ୍ୟାପଣଗର୍ଜି କୁକୁରଦ୍ୱୟ ମଧ୍ୟ ଆଜି କୁଣଧ୍ୱଜର ଏହି ଆକସ୍ମିକ ସୌଭାଗ୍ୟରେ ମୂକ ହୋଇପଡ଼ିଛନ୍ତି ।

ଏହି ସମ୍ବାଦଟି—ଅର୍ଥାତ୍‌ ପୁରସ୍କାରପ୍ରାପ୍ତିର ଏବଂବିଧ ବ୍ୟବସ୍ଥା ସମ୍ପର୍କେ ତାଙ୍କୁ ଜଣାଇଦେବାଲାଗି, ମୁଁ କୁଣ୍ଡଧ୍ଵଜର ଘର ଆଡ଼କୁ ମୁହାଁଇଲି । ମକରଧ୍ଵଜ ବାବୁ ନୀରବ କ୍ଲାନ୍ତିରେ ମଥାକୁ ଦୁଇ ହାତରେ ଧରି ଛକଉପରୁ ଆପଣା ଘରକୁ ବାଟ କାଟିଲେ ।

ପଥମଧ୍ୟରେ ପୌରସଭାର ଅଧ୍ୟକ୍ଷ ଓ ଜିଲ୍ଲା ସୋସାଲିଷ୍ଟ ପାର୍ଟିର ସଭାପତି ବିନାୟକ ଶତପଥୀଙ୍କ ସଙ୍ଗେ ଦେଖାହେଲା । ସେ କହିଲେ—କଓ ? ତୁମ ଅଫିସର କୁଣ ପାଇଗଲା ନା ?

ଆଜ୍ଞା ହଁ—ଭାଗ୍ୟ ହେଲା ଅସଲ । ତା'ଛଡ଼ା ଭଗବତୀର କୃପା ନହେଲେ··· ଏ ସୌଭାଗ୍ୟ···

ସୋସାଲିଷ୍ଟ ନେତା ଓ ପୌରସଭାପତିଙ୍କ ମୁହଁରେ ଏକ ଅସହିଷ୍ଣୁ କୁଟୀଳ ଭ୍ରୁକୁଟୀ ଫୁଟିଉଠିଲା···

ଆରେ ନାଃ···ଭାଗ୍ୟ ! ଭଗବତୀ !! ତୁମେ ତୁଚ୍ଛ ଛେନାଗୁଡ଼ । ତା'ଭିତରେ ପଲିଟିକ୍ସ୍ ରହିଛି ।

ପଲିଟିକ୍ସ ?

ହଁ ପଲିଟିକ୍ସ ନୁହଁ ଆଉ କଣ ? ସେଇ ଲଟେରି କମିଟୀରେ ଏବର୍ଷ ସୋସାଲିଷ୍ଟ ପାର୍ଟିରୁ ଜଣେ କେହି ନାହିଁ । ସବୁ କଂଗ୍ରେସିଆ ଆଉ କମ୍ୟୁନିଷ୍ଟଯାକ ପଶିଛନ୍ତି ସେଥିରେ । ସେ କୁଣାଟା କମ୍ୟୁନିଷ୍ଟ ବୋଲି ଜାଣିଛ ?

ଅଜାଡିକୁ ବଣିଜ ଅଡ଼ୁଆ । କରଣି ମାଷ୍ଟରମାନଙ୍କୁ ଆଜ୍ଞା ପଲିଟିକ୍ସ ଅଡ଼ୁଆ । କହିଲି, ଆଜ୍ଞା ହୋଇଥିବ—ଏ ବଡ଼ଲୋକଙ୍କର ମତ !!

"ହଁ" ମାତ୍ର ଯାଇ ପହୁଁଚିଲି କୁଣ୍ଡଧ୍ଵଜ ଦୁଆରେ । ଭାବିଥିଲି—ସମଗ୍ର ସହର ଅବସ୍ଥା ଯେତେବେଳେ ଏଭଳି ସଙ୍କଟାପନ୍ନ—କୁଣ୍ଡଧ୍ଵଜ କିଂବା ତସ୍ୟ ପୁତ୍ର ମଦନମୋହନ କିଂବା ତସ୍ୟମାତା ଅମୁକା ଦେବୀ ତନ୍ମଧ୍ୟରୁ କେହି ଆଉ ଇହଧାମରେ ନଥିବେ ।

ଲକ୍ଷେ ପଚିଶ ହଜାର !!'

ସ୍ତାବ୍ଧ !!!

ଇଲେ ବାପାଲେ !!!

ମୋର ସ୍ତବ୍ଧ ଦାଉଁକନା ଆବାଜକଲା ।

ପାଠକେ ! ସମଗ୍ର ସହର ଏଭଳି ବିପର୍ଯ୍ୟୟର ସମ୍ମୁଖୀନ ହେଲାବେଳେ ମୁଁ ଯେ ଖୁବ୍ ସ୍ତବ୍ଧ ବନ୍ଦବାଲା ବା ମୁଁ ଯେ ଖୁବ୍ ଉଦାରଲୋକ କିମ୍ବା ମୁଁ ଯେ ଜଣେ ବୈରାଗୀ ଉଦାସୀ —ଏମନ୍ତ ନୋହେ । ଅସଲ କଥା ହେଉଛି— ଏଇ ଦୁଃସମ୍ବାଦ ଶ୍ରବଣେ ମୋର କୌଣସି

ସ୍ନାୟୁ ଆଉ ସମ୍ବେଦନଶୀଳ ଅବସ୍ଥାରେ ନଥିଲେ । ଅତି ପ୍ରିୟଜନର ହଠାତ୍ ମୃତ୍ୟୁ ହେଲେ —ଯେଉଁମାନେ ସଙ୍ଗେ ସଙ୍ଗେ ପ୍ରତିକ୍ରିୟା ଦେଖାଇ କାନ୍ଦିପକାନ୍ତି—ସେମାନେ ବରଂ ଅଧିକ ସୁସ୍ଥ—ଆଉ ସେଇମାନେ ବଞ୍ଚିଯାନ୍ତି । ମାତ୍ର ମୁଁ ହତଭାଗା—କି ମର୍ମନ୍ତୁଦ ପ୍ରତିକ୍ରିୟାହୀନ ଯନ୍ତ୍ରଣା ମୋର ଅନ୍ତର ମଧ୍ୟରେ ମୁଁ ଅନୁଭବ କରୁଥିଲି—ତାହା କାହାକୁ କିପରି ବୁଝାଇବି ?

ମୋଟକଥା—ମୁଁ ହସିପାରୁନଥିଲି—ଈର୍ଷା କରିପାରୁନଥିଲି—ହିଂସା ମଧ୍ୟ କରି-ପାରୁନଥିଲି । ମାନେ—ମୁଁ ଫାଟିବି ଫାଟିବି ହେଉଥିଲି—ଫାଟୁନଥିଲି ।

ମନେ ମନେ ସନ୍ଦେହ କରିଗ୍ଲଲିଥିଲି—କୁଶଧ୍ୱଜ ଓ ତାସ୍ୟ ପରିବାର କିପରି ଥିବେ ? ସେମାନେ ଆଉ ବଞ୍ଚିଥିବେ ତ !!

କୁଶଧ୍ୱଜର ଦାଣ୍ଡ ଅଗଣାରେ ପହଞ୍ଚି ମୁଁ ଯାହା ଦେଖିଲି—ତାହା ମୁଁ ନିଜେ ବିଶ୍ୱାସ କରିପାରିଲି ନାହିଁ—ଆପଣଙ୍କୁ ବା କିପରି କହିବି ଯେ ବିଶ୍ୱାସ କରନ୍ତୁ ବୋଲି !!

କୁଶଧ୍ୱଜ ବସିଛନ୍ତି—ଗୋଟିଏ ଦଉଡ଼ିଆଖଟ ଉପରେ—କହିତ ଆଗକୁ ଝୁଲିପଡ଼ି ଟିକିଏ ଘୁମାଇଲି ଭଳି—ଗୋଟିଏ ପାଦ ଖଟ ଉପରେ—ଆଉ ଅନ୍ୟ ପାଦଟି ଭୂମିକୁ ସ୍ପର୍ଶ କରୁଛି । କୁଶନନ୍ଦନ ମଦନମୋହନ ଖଣ୍ଡିଏ ଭଙ୍ଗା ଟିଣଚଉକି ଉପରେ ବସି ସିଗ୍ରେଟ ଖାଇ ଉପରକୁ ରିଙ୍ଗ୍ ଗ୍ଲଡ଼ୁଛନ୍ତି ।

ଆମ ଅଫିସିର ସମସ୍ତ ପିଅନଗୋଷ୍ଠୀ ସେଠି ସମାବୃତ । ଦପ୍ତରୀ ଶମ୍ଭୁନାଥ କୁଶଧ୍ୱଜଙ୍କ ବିଲମ୍ବିତ ପଦକୁ ସ୍ୱସ୍କନ୍ଧରେ ଧାରଣପୂର୍ବକ ସେବାରତ ହୋଇ କହୁଛି—ମହାଶୟ ! ମୁଁ ବି ଏ ଗ୍ଲକିରି ଗ୍ଲଡ଼ିଦେବି । ମତେ ଗୋଟିଏ ବସ୍‌ରେ କଣ୍ଡକ୍ଟର କରି ରଖ ।

ପେଁକାଲିଆ ନାହାକ କୁଶଧ୍ୱଜର ପୃଷ୍ଠଦେଶକୁ ମର୍ଦ୍ଦନ କରୁ କରୁ କହୁଛି—କୁଶ କକା ! ମତେ ଏ ଗ୍ଲକିରିରୁ ଉଦ୍ଧାର କର । ଖଣ୍ଡିଏ ହୋଟେଲ ଏଠି କର । ମୁଁ ସେଠି ମେନେଜର ହେବି ।

ଆଉ କେହି ଜଣେ ପାକୁଳେଇ ହେଉଛି—ଏ ଗ୍ଲକିରିକୁ ଆଜିଠାରୁ ଗୁଲି ମାରିଲି କୁଶଭାଇ ! ତୁମ ମନୋହାରୀ ଦୋକାନରେ ଏଣିକି ମୁଁ ରହିବି—ସେଲ୍‌ସମାନ୍ ହୋଇ ।

ଏହିଭଳି ଅନେକାନେକ ଅନୁନୟ, ବିନୟ, କାକୁତି, ମିନତି ଗ୍ଲଲିଛି । ମୋଟାମୋଟି କଥା ହେଉଛି—"ଚକ୍ରଧର ! ପକ୍ଷୀଜନ୍ମରୁ ପାରିକର" ସ୍ୱରରେ ଏକ ସମ୍ମିଳିତ ସ୍ତୁତି— —"ହେ ଲକ୍ଷପତି କୁଶଧ୍ୱଜ ! ଆମକୁ ଏ ପିଅନ ଜନ୍ମରୁ ତାରିକର ।"

ମତେ କିନ୍ତୁ ଆହୁରି ବିସ୍ମିତ ହେବାକୁ ପଡ଼ିଲା—ଯେତେବେଳେ ପିଅନମାନଙ୍କୁ ଠେଲି, ଆମ ଅଫିସିର ମୁରଲୀବାବୁ ଆକାଉଣ୍ଟାଣ୍ଟ ଆସି ଜଣାଇଲେ—ବୁଝିଲେ କୁଶବାବୁ ! ମୋର

ଆକାଉଣ୍ଟ ସେକ୍ସନ୍‌ରେ ରହିବା ବାରବର୍ଷ ହୋଇଗଲା । ଆଉ ନୁହେଁ । ମତେ ତୁମ କମ୍ପାନୀରେ ମେନେଜରୀ ପୋଷ୍ଟଟି ଦିଅ । ଏ ଶଃ—ସରକାର ପାଖେ ମୁଣ୍ଡ ବିକି ଆଉ ଲାଭ ନାହିଁ ।

ଏତେ କୋଳାହଳ, ସ୍ତୁତି, ବିନତି, ପ୍ରାର୍ଥନା, ଜଣାଣ ଗୁହାରପଟେ । ମାତ୍ର କୁଣଧ୍ୱଜ ପୂର୍ବପରି ଧୀର, ସ୍ଥିର, ଗମ୍ଭୀର, ଅବନତ ମସ୍ତକ । ସତେକି ସବୁ ସେ ଶୁଣୁଛନ୍ତି—ବୁଝୁଛନ୍ତି—ଜାଣୁଛନ୍ତି—ମାତ୍ର ଯାହା ତାଙ୍କର କରିବାର କଥା—ଯାହାକୁ ଯାହା କରିବାର କଥା—ସେ କଥା ସେ କରିବେ ପରେ—ଯାହା ହବାର ହବ ପରେ । ତେବେ କହିଯାଅ ତୁମେମାନେ—ଜଣାଇଯାଅ—ଶୁଣିଥାଏଁ—ଏମିତି ଗୋଟେ ଭାବ ।

କୁଣକୁଳଚନ୍ଦ୍ରମା ମଦନମୋହନ ମଧ୍ୟ ସିଗ୍ରେଟ ଖାଉଥାନ୍ତି ଓ ରିଙ୍ଗ୍ ଛାଡ଼ୁଥାନ୍ତି ନିର୍ବିକାରଭାବେ । ସତେ କି ଯାହା ହେବାର କଥା—ତାହା ହୋଇଛି—ଏମିତି କିଛି ଅଘଟଣ ନୁହେଁ—ଆକସ୍ମିକ ନୁହେଁ । ମଞ୍ଜି ପୋତାହୋଇଥିଲା—ପାଣି ଛିଞ୍ଚାହୋଇଥିଲା, ଗଛହୋଇ ଫୁଲ ଫୁଟିଛି ଓ ଫୁଲମାନେ ଫଳଧରିଛନ୍ତି । ଏ ସୌଭାଗ୍ୟ ଏମିତି କିଛି ନାଟକୀୟ ନୁହେଁ—ସେମାନେ ଜାଣିଥିଲେ ଏ କଥା ଆଗରୁ । ଲକ୍ଷେ ପଚିଶ ହଜାର ଏମିତି କଇ ଗୋଟାଏ ଟଙ୍କା ? ଦଶକୋଟି ତୁଳନାରେ ଏହା କେତେ ତୁଚ୍ଛାତିତୁଚ୍ଛ !! ଅତଏବ ସିଗ୍ରେଟ ଖାଇ ଉପରକୁ ରିଙ୍ଗ୍ ଛାଡ଼ିବା ଉଚିତ । ଏଇ କଥାକୁ ନେଇ ଏତେ ହଇଚଇ ଅଲପ ଲୋକଙ୍କ କାମ ।

ପାଠକେ ! ଅଲମତିବିସ୍ତରେଣ । ଆପଣମାନେ ସବୁ ବୁଝିପାରୁଥିବେ । ଆମ ଅଫିସର ପଞ୍ଚୁରୁଲଗି ଟଙ୍କିଆ ପିଅନ କୁଣଧ୍ୱଜ ଓ ତସ୍ୟ ନନ୍ଦନ ମଦନମୋହନ ସମେତ ପରିବାର, ଏଇ ରାତାରାତି ପ୍ରାପ୍ତ ଲକ୍ଷେ ପଚିଶ ହଜାର ଟଙ୍କାକୁ ଅତି ସହଜ ସାଧାରଣଭାବେ ଗ୍ରହଣକରିନେଲେ—ଅଥଚ ତା'ର ଏଇ ଆକସ୍ମିକ ସୌଭାଗ୍ୟପ୍ରାପ୍ତିରେ ସମଗ୍ର ସହର ଈର୍ଷା କାତରାଗ୍ନିର ପ୍ରଚଣ୍ଡ ଉତ୍ତାପରେ ବିପର୍ଯ୍ୟସ୍ତ ।

ପୁରସ୍କାର ପ୍ରଦାନର ରାତି ସମ୍ବନ୍ଧେ କୁଣକୁ ସବୁକଥା ଜଣାନ୍ତେ—କୁଣ ବଡ଼ ଧୀର ଗମ୍ଭୀର ଭାବେ କହିଲା—ହଅ ! ସେଥିରେ କଣ ଅଛି ? ଯାହା ଯେମିତି କରିବାର କଥା କରନ୍ତୁ । ସବୁଥିରେ ତ ଗୋଟାଏ ବିଧାନ ରହିଛି !! ଆରେ ବାପ ମଦନ; ବାବୁ ଆଇଚନ୍ତି—ଖଣ୍ଡେ ପାନ ସିଗ୍ରେଟ ଦେ ।

ମଦନ ମଧ୍ୟ ସ୍ୱାଭାବିକ ଭାବେ ସିଗ୍ରେଟ ଖଣ୍ଡିଏ ଦେଲା । ମୋ ପାଟିରେ ସିଗ୍ରେଟ ରଖିଲାପରେ—ସେ ନିଆଁ ଧର୍‌ଇବାକୁ ଯାନ୍ତେ—ମୁଁ ତା' ହାତରୁ ନିଆଁକାଠି ଧରି ନିଜେ ଲଗାଇଲି । ସ୍ୱଗତେ ଭାବିଲି—"ଆଉ ମୁହଁରେ ନିଆଁ ଦେ'ନା ବାବୁ—ଯଥେଷ୍ଟ ହେଲଣି ।"

ଘରକୁ ଫେରିଆସିଲି । ଘରେ ଆସି ଦେଖିଲି—ମୋର ପ୍ରାଣପ୍ରିୟା ପତ୍ନୀଙ୍କର ଚେତା ଫେରିଆସିଛି—ମାତ୍ର ସେ ଭୟଙ୍କର ପ୍ରଲାପ କରୁଛନ୍ତି । ନାନା ଅସଲଗ୍ନ ପ୍ରଲାପ । ତେବେ

ସେଥିରୁ ଗୋଟିଏ ବାକ୍ୟ ବାରମ୍ବାର ସଲଗ୍ନ ହୋଇ ଶୁଣାଯାଉଛୁ —"ହାଁରେ କୁନା ! କୁଣା ପିଅନ ପାଇଲା ଲକ୍ଷେ ଟଙ୍କା ! ତୋ' ବାପା କ ଦୋଷ କରିଥିଲେ ରେ ? ହାଁରେ ଦଇବ···ତୁ ଏଡ଼େ ଦାରୁଣ !

ସ୍ୱପ୍ନଟା ପତ୍ନୀଙ୍କର ଶୁଶ୍ରୂଷାରେ କଟିଲା । ମତେ ବାରମ୍ବାର ବୁଝାଇବାକୁ ପଡ଼ୁଥାଏ···ହେ —ଶୁଣ—ଶୁଣ--ସେମିତି ବାସ୍ତବାଣୀ ହୁଅନାହିଁ—ଏସବୁ ପୂର୍ବଜନ୍ମର ଭାଗ୍ୟ—ତପସ୍ୟା ନଥିଲେ ମିଳେନା ।

ମାତ୍ର ସେ ପ୍ରଳାପ କରିବାକୁ ଲଗିଥାନ୍ତି—

ହାଇଓ ! ଲକ୍ଷେ ଟଙ୍କା !!···ପୁଣି କୁଣା ପାଇଲା ?

ମୁଁ ମଧ୍ୟ ବୁଝାଇଲାଗିଥାଏ—ଆହେ—କ ଲକ୍ଷ ସେ ଦେଖାଇବ ? ତା'ଠାରୁ ବଳି ତା'ଠାରୁ ବଳି କୋଟିପତିମାନେ ଅଛନ୍ତି ।

ସେ ପୁଣି ପ୍ରଲପିଲେ—ଲକ୍ଷେ ଟଙ୍କା ପୁଣି ସେ ଯୋଗ୍ନାଖିଆ ପାଇଲା ?

ମୁଁ ପୁଣି ବୁଝାଇଲି—ଅରେ ଦେଖିବ ରହିଥା—ସେ ଟଙ୍କା ଆଖିପିଛୁଳାକେ ଛିମିଳିବୁଲା ଭଳି ଗଗନେ ଉଡ଼ିଯିବ । କୁଣା ଆଉ ମଦନା ଲକ୍ଷେ ଟଙ୍କା ପାଇ ସମଲା ପଡ଼ିବେ ଭାବୁଛ ? ଦେଖ, ତୁମେ ଆଉ ବ୍ୟସ୍ତ ହୁଅନା—ସୁନାଟା ପରା !!

ମାତ୍ର ସେ ପୁଣି ବକିବକେଇଲେ—କୁଣା ପୁଣି ପାଇଲା ଲକ୍ଷେ ଟଙ୍କା । ଓହୋ ଦଇବରେ !!!

ମୁଁ ତାଙ୍କ ମୁଣ୍ଡକୁ ଧରିପକାଇ କହିଲି—ଆହେ—ଏହି ନଶ୍ୱର ସଂସାରରେ ସବୁ ଅସ୍ଥାୟୀ, ଧନ ସମ୍ପତ୍ତି ଗୋଟେ କ କଥା ? ଆଜ ଯେ ରାଜେନ୍ଦ୍ର।ସନେ କାଲି ସେ ଫକର !!—ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ···

ମାତ୍ର ତାଙ୍କୁ ବୁଝାଇବା ସହଜ ନୁହେଁ—ସେ ପୁଣି ଚିତ୍କାର କରିଉଠିଲେ—ଓହୋ ! ବିଧାତା ରେ !! ସେ କୁଣାକୁ ତୁ କେମିତି ସହୁଛୁ ରେ ? ଲକ୍ଷେ ଟଙ୍କା ପାଇ ତା' ଗ୍ରୁଡ଼ କେମିତି ଫାଟି ଯାଉନ ରେ !!

ଏଥର ମୁଁ ମୋର ସ୍ତ୍ରୀଙ୍କୁ କୋଳକୁ ଆଉଜାଇଆଣି ସର୍ବଶେଷ ତଥ୍ୟ ବୁଝାଇଲି—ଶୁଣ କୁନାବୋଉ । ଧନ ଗୋଟାଏ ବାଧା—ଆମେ କେମିତି ସ୍ୱର୍ଗକୁ ଯିବା ତାର ଉପାୟ ଚନ୍ତା କର । ଧର୍ମ ହେଲା ଅସଲ—କବି କହିଛନ୍ତି—"ବାଳିକାଳୁ ଧର୍ମ ଧନ ମୁଁ ସଞ୍ଚିବ ଏ ଜୀବନ ଅନିଶ୍ଚିତ ।" ଆମେ ଧର୍ମ କମେଇବା; ଯାହାଫଳରେ କ ମଲାପରେ ସ୍ୱର୍ଗରେ ବସି ଅମୃତ ଆଉ ଅକ୍ଷୟ ସୁଖ ଭୁଞ୍ଜୁଥିବା । ଆଗ ଆତ୍ମାର ସଦ୍‌ଗତି ଉପାୟ ଚନ୍ତାକର । ସ୍ୱର୍ଗରେ ରତ୍ନସିଂହାସନରେ ବସି ତୁମେ ସେତେବେଳେ ଦେଖିବ—କୁଣା ସପରିବାର

କୁମ୍ଭୀପାକ ନର୍କରେ ପଡ଼ି ଯାଣ୍ଡିହେଉଛୁ । ଗୋଟେ ତତଲ ତେଲକଡ଼େଇରେ କୁଣାକୁ ପକାଇ ଯମଦୂତମାନେ ତାକୁ ସେହି ଗାଣ୍ଡିଆ ପରି କଡ଼କଡ଼ କରି ଭାଜିବେ—ତେମେ ସହ୍ୟାତ କର । ହେଉଛି ଅନେଇଲ ! ଗୋଟେ ମୁନିଆ କରତ ଧରି ନଜେ ଯମ କୁଣା ମୁଣ୍ଡକୁ ଦ'ଫାଳକରି ଯଦି ନ ଚିରୁଛୁ—ତେବେ ତୁମେ ମୋତେ କହିବ !…ଉଠିବନି ଉଠ…ହେଉଛି, ମୋ ସୁନାଝିା ପରି ! ଗୁଣୀଝିା ପରି !!…ଉଠିବନି ଉଠ…"

ବିଚାରି ନିର୍ଦ୍ଦୋଷ କୁଣା ଅକସ୍ମାତ ଲକ୍ଷପତି ହୋଇଯିବାର ପାପହେତୁ ତା'ର କୁଫଳ କେମିତି ବିବିଧ ନର୍କରେ ଭୋଗକରିବ—ତା'ର ଜୀବନ୍ତ ବର୍ଣ୍ଣନା, ମୁଁ ଦାନ୍ତ ରଗଡ଼ିବେଇ, ଓଠ କାମୋଡ଼ି ବିଧାନ କରୁକରୁ—ଅନ୍ୟାନ୍ୟ ରାତିଭଳି ସେଇ କାଳରାତିଟି ମଧ୍ୟ ପାହିଗଲା । ଦୁଃଖ ପରେ ସୁଖ—ସୁଖ ପରେ ଦୁଃଖ ଲଗିଛୁ ଏହି ସଂସାରେ ।

କଥିରୁ—ବେଙ୍ଗ ବୋଲେ ବେଙ୍ଗୁଲୀ ଲୋ ! ପୃଥୀ କ୍ଷଣ କ୍ଷଣକେ ଆନ ।

ରାତି ପାହି ସକାଳ ହେଲା । ଠିକ୍ ସକାଳ ଆଠଟାରେ କଲେକ୍ଟର ସାହେବଙ୍କ ବଙ୍ଗଳାରୁ ଖବର ଆସିଲା—ପୂର୍ବ ରାତିର ଘଟଣା ମିଛ । ସେ ସକାଳୁ ଫୋନ୍‌ରେ ସବୁ ବୁଝିନେଇ ସାରିଲେଣି । AD 813204 ନମ୍ବରଟି ପ୍ରଥମ ପୁରସ୍କାର ତ ନୁହେଁ—କୌଣସି ପୁରସ୍କାର ମଧ୍ୟ ପାଇନାହିଁ । କେହି ଦୁର୍ବୃତ୍ତ—ହୋଇପାରେ ପିଅନମାନଙ୍କ ମଧ୍ୟରୁ କେହି—ଏଭଳି ମିଥ୍ୟା ଟେଲିଗ୍ରାମରୂପକ କୁକର୍ମ କରିଦେଇଅଛୁ ।

ପାଠକେ ' ଏହି ସୁସମ୍ବାଦ ସ୍ୱର୍ଗମନ୍ଦାକିନୀର ସୁଶୀତଳ ଧାରା ଭଳି ସହରରେ ପ୍ରବାହିତ-ହେଲା । ଗତରାତିଠାରୁ ବିଷାଦଗ୍ରସ୍ତ—ଈର୍ଷାଗ୍ନିଦଗ୍ଧ ସହର ସେହି ଶୀତଳ ଧାରାରେ ପ୍ଲାବିତ ହୋଇ ନବଜୀବନରେ ଉତ୍‌ଫୁଲ୍ଲିତହେଲା । ସହରର ବିଶିଷ୍ଟ ଧନକୁବେର ରତନଲାଲ ସାହାଙ୍କର ଦୁଆରମୁହଁରେ ଦାମାମା, ଡ୍ରମ୍, ବିଗୁଲ୍, ସାନାଇ ଆଦି ବିବିଧବାଦ୍ୟ ବାଦିତ ହୋଇ ଗଗନ ପବନକୁ ମୁଖରିତକଲା । ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ, କଳସ ରଖାଗଲା । ରମ୍ଭାବୃକ୍ଷ ପୋତାହେଲା । ବିଭିନ୍ନ ରଙ୍ଗର ପତାକାମାଳଦ୍ୱାରା ରାଜପଥ ସୁଶୋଭିତ ହେଲା । ସମସ୍ତେ ସ୍ୱସ୍ତିର ନିଃଶ୍ୱାସ ମାଇଲେ ।

ଆମ ଅଫିସର କର୍ମଚାରୀଗଣ ଏକତ୍ର ମିଳିତ ହୋଇ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଜାନୁପାତି ପ୍ରାର୍ଥନା କଲେ—ହେ ପରାତ୍ପର ପରମେଶ୍ୱର ! ଆମେମାନେ ତୁମ୍ଭଙ୍କୁ ଅଯଥାରେ ଭୁଲ୍ ବୁଝିଥିଲୁ । ଆମ୍ଭମାନଙ୍କୁ କ୍ଷମାକର । ତୁମେ ଅଘଟଣ ଘଟାଇପାର । ଏକଥା କାଲି ରାତିରେ କୁଣା ପିଅନ ଲକ୍ଷେ ପଚିଶ ହଜାର ପାଇବାବେଳେ ବିଶ୍ୱାସ କରିପାରୁନଥିଲୁ । ଆଜି କିନ୍ତୁ ଯେତେବେଳେ ଜାଣିଲୁ—ତାହା ସର୍ବୈବ ମିଥ୍ୟା—ସେତେବେଳେ ଯାଇ ବୁଝିଲୁ—ତୁମର ଅଘଟଣ ଘଟଣ ପଟିୟସୀ ଶକ୍ତିର କେତେ କରାମତି !

ପାଠକେ ! ମୋର ଦୁର୍ଭାଗ୍ୟ—କୁଣାର ଏବଂବିଧ ବିପର୍ଯ୍ୟୟରେ ସମସ୍ତଙ୍କ ଭଳି ମୁଁ ଅଧମ ଟିକିଏ ଉଲ୍ଲସିତ ହେବାର ସୌଭାଗ୍ୟ ମଧ୍ୟ ପାଇଲିନାହିଁ । ମୋର ଗତ ରାତିର ସ୍ନାୟୁବିକ

ଜଡ଼ତା ଅଦ୍ୟାବଧି କଟିନାହିଁ । ମୋର ଅନୁଭବଶକ୍ତି ଲୁପ୍ତ । କୁଶାର ସେହି ଆକସ୍ମିକ ଲକ୍ଷପତି ହେବାର ସୌଭାଗ୍ୟ-ଶ୍ରବଣ-ଜନିତ ଜଡ଼ତା ତାର ଏହି ଆକସ୍ମିକ ବିପର୍ଯ୍ୟୟରେ ମଧ୍ୟ ସଚେତନ ହେଲନାହିଁ ।

ଯଥାସମୟରେ ସେଦିନ ଅଫିସକୁ ଗଲି । ମନରେ କେବଳ ଚିନ୍ତା—ଆଜି ଆଉ କୁଶା ଇନ୍ଦ୍ରଧାମରେ ନଥିବ । ନିଶ୍ଚିତ କ୍ଷତି ଆଉ ଅପମାନରେ ସେ ସପରିବାର ଇନ୍ଦ୍ରଧାମ ତ୍ୟାଗକରି ନର୍କଗାମୀ ହୋଇ ସାରିଥିବ ।

ଅଫିସ୍‌ରେ ପହଞ୍ଚି ଦେଖିଲି—ସମସ୍ତେ ବେଶ୍ ସ୍ୱାଭାବିକ ଭାବେ ସେଠାରେ କାମ କରୁଛନ୍ତି । ଏକ ସତେଜ ଉତ୍‌ଫୁଲ୍ଲିତା ବାୟୁମଣ୍ଡଳରେ ପୂରିଯାଇଛି । ମୁଁ ମୋର ଚଉକିରେ ବସି କାମ କଲି । କିୟତ୍‌କ୍ଷଣ ଉତ୍ତାରେ ତୃଷ୍ଣା ନିବାରଣ ଉଦ୍ଦେଶ୍ୟରେ ଡାକିଲି—ଆରେ କିଏ ଅଛରେ—ଟିକିଏ ପାଣି ଆଣ ତ !!

ଜଳପୂର୍ଣ୍ଣ ଗ୍ଲାସ ଧରି ଯେ ସେତେବେଳେ ବିନୀତ, ଧୀର, ଗମ୍ଭୀର ଓ ଦୃଢ଼ ହୋଇ ମୋ ପାଖରେ ଠିଆହେଲା—ସେ ହେଉଛି କୁଶଧ୍ୱଜ ! ଶ୍ରୀ କୁଶଧ୍ୱଜ ନାୟକ । ସେହିଭଳି ଅପରିବର୍ତ୍ତିତ, ସାଧାରଣ, ସହଜ, ବିନୀତ, ଧୀର, କର୍ତ୍ତବ୍ୟନିଷ୍ଠ, ଗମ୍ଭୀର, ଦୃଢ଼, ଦୃଢ଼ । କିଛିକ୍ଷଣ ସ୍ତବ୍ଧ ହୋଇ ଗ୍ରହିଁଲି । ତା'ପରେ ପଚାରିଲି ଖୁବ୍ ସନ୍ତର୍ପଣରେ—କଣ କୁଶ ? ଏମିତି ଗୋଟେ ଅଘଟଣ—ବଡ଼ ଦୁଃଖର କଥା—ମାନେ—କଣ—ଏମିତି—କିଏ ! ଅଃ !! ବଡ଼ଦୁଃଖର କଥା—ଛୁ-ଛୁ—କଣ—ଏମିତି—କିଏ—କାହିଁକି ?

ଅଳ୍ପ ଟିକିଏ ଗମ୍ଭୀର ହସ ହସି କୁଶ ଗ୍ଲାସଟି ବଢ଼େଇଦେଇ କହିଲା—ଖେଳେଡ଼ା-ଗୁଡ଼ାକ ଆଜ୍ଞା ! ଗୋଟେ ଗୋଲ ନଗେଇଦେଲେ !! ତାଙ୍କର କଣ ଯାଉଛି ନା ଆସୁଛି !!

ସେ ଯେମିତି ଏତେକ ଧୀର, ନିର୍ବିକାରଭାବେ କହିଲା—ସତେ କି ଏହା ଏକ ସାମାନ୍ୟ ପରିହାସ ମାତ୍ର, ଅଜା ନାତି ରହସ୍ୟଭଳି, ଦିଅର ଭାଉଜ ରହସ୍ୟଭଳି—ସତେ କି ଏ କିଛି ନୁହେଁ—କେବଳ କୁଶାର ନିଦ୍ରିତ ଅବସ୍ଥାର ସୁଯୋଗ ନେଇ କେତେକ ଖେଳେଡ଼ା ନାତି ଶ୍ରେଣୀର ଟୋକା ତା' ନାକତଳେ ନିଶ କରିଦେଇଥିଲେ—ନିଦରୁ ଉଠି କୁଶା ଦେଖି କିଂଚିତ୍ ଲଜ୍ଜା ଆଉ କିଂଚିତ୍ ଆନନ୍ଦ କୌତୁକ ମାତ୍ର ବୋଧ କରୁଛି—ତଦୂର୍ଦ୍ଧ୍ୱ କିଛି ନୁହେଁ ।

ପାଠକେ ! କୁଶଧ୍ୱଜର ସେହି ନିର୍ଲିପ୍ତ, ଉଦାସୀନ, ଉଦାର କୌତୁକବୋଧ ଜାତ ଅଜାସୁଲଭ ସ୍ମିତ ଏ ଜଗତରେ ଦୁର୍ଲ୍ଲଭ । ମୁଁ ଚଉକିରୁ ଉଠି କୁଶାର ଗୋଡ଼ତଳେ ପଡ଼ି କହିବାକୁ ଯାଉଥିଲି—କୁଶା—କୁଶଧ୍ୱଜ ! ହେ ମହାତ୍ମନ୍ ! ବଡ଼ ସାହେବଙ୍କ ଚଉକି ଉପରେ ମୋର ଅଧିକାର ଥିଲେ—ଏହିକ୍ଷଣି ତାକୁ ତୁମଲାଗି ଛାଡ଼ିଦିଅନ୍ତି । ତାହା ମୋର ଅଧିକାର ବହିର୍ଭୂତ । ମୋ ଚଉକି ମୁଁ ଛାଡ଼ିଦେଉଛି—ତୁମେ ଏଠାରେ ଆସି ବସ । ମୁଁ ତୁମର

ଆଜ୍ଞାଧୀନ ହେବ । ତୁମେ ପ୍ରକୃତରେ ମହତ୍ । ମୋ'ଠାରୁ ବଡ଼ । ଲକ୍ଷେ ପଚ୍ଚିଶ ହଜାର ମୁଦ୍ରାଠାରୁ ଅଧିକ ମୂଲ୍ୟବାନ୍ ତୁମର ଗୁଣ । କାରଣ ରାତାରାତି ଆକସ୍ମିକ ଭାବେ ଲକ୍ଷେ ପଚ୍ଚିଶହଜାର ମୁଦ୍ରା ହରାଇଦେବାର ସକ୍‌କୁ ମଧ୍ୟ ତୁମେ ଅକ୍ଳେଶରେ ପାରହୋଇଗଲ । ତୁମେ ଧନ୍ୟ !!

ମାତ୍ର ଏତେକ ମୁଁ ବ୍ୟବହାରରେ ଦେଖାଇପାରିଲିନାହିଁ—କାରଣ ମୋ ଗୁଣ ଆହୁରି ସାନ—ଆହୁରି ଦୁର୍ବଳ—ଆହୁରି ନୀଚ—ମୋ ଗୁଣ ତ ଆଉ କୁଣାର ଗୁଣଭଳି ଲକ୍ଷେଟଙ୍କାର ଗୁଣ ନୁହଁ !!

□□□

# ତନି ମେଳିଆଙ୍କ କାହାଣୀ

ଯେତେବେଳେ ପୃଥିବୀ ଉପରେ ଦୁର୍ଭାଗ୍ୟର ମନ୍ଦଗ୍ରହମାନେ ଏକଜୁଟ ହୁଅନ୍ତି—ଯେତେବେଳେ ମହାମାରୀ, ମଡ଼କ, ଦୁର୍ଭିକ୍ଷ, ଝଡ଼ଝଞ୍ଜା, ବନ୍ୟା, ମରୁଡ଼ି ଓ ଅରାଜକତାର କରାଳଛାୟା ଦେଶ ଉପରେ ଘୋଟିଆସେ, ଯେତେବେଳେ ନୀତି ଲଂଘିତା ହୁଅନ୍ତି, ରୁଚି ଧର୍ଷିତା ହୁଅନ୍ତି, ଲଜ୍ଜା ନିର୍ବାସିତା ହୁଅନ୍ତି, ପ୍ରୀତି ବର୍ଜିତା ହୁଅନ୍ତି, ସତ୍ୟ ପୀଡ଼ିତ ହୁଅନ୍ତି ଓ ଧର୍ମ ଲଂଘିତ ହୁଅନ୍ତି—ସେତେବେଳେ ପୃଥିବୀରେ ନାନାଦି ଖଳକ୍ଷଣମାନ ଦେଖାଦିଏ । ସେହିକିବେଳେ ହିଁ ସେ ତିନି ଜଣ ଏକଜୁଟ ହୁଅନ୍ତି—ମିଳିତ ହୁଅନ୍ତି । ସେମାନେ ହେଲେ—ଆଳିଆ, କାଳିଆ ଓ ବାଲିଆ । ଷଡ଼ରିପୁଙ୍କ ଭିତରେ ଅଚ୍ଛେଦ୍ୟ ବନ୍ଧନ ଭଳି ସେମାନଙ୍କ ଭିତରେ ଗୋଟେ ବନ୍ଧନ ଅାସିଯାଏ ।

ସେମାନେ ପ୍ରତ୍ୟେକ ପୃଥକ୍—ମାତ୍ର ଏହି ରୂପ ଏକ ସାଂଘାତିକ ବେଳାରେ ସେମାନଙ୍କୁ ସୟତାନ ଏକାଠି ମିଳାଇଦିଏ । ସେଦିନ ସେମାନେ ତିନିଦିଗରୁ ଛୁଟି ଆସିଲେ ଓ ଗୋଟିଏ ପାହାଡ଼ିଆ ଜାଗାରେ ଗଛମୂଳେ ଏକାଠି ହେଲେ । ଆଗରେ ଘୁମ୍ନାଘେରା ଲମ୍ବା ରାସ୍ତା । ଅଣି ପାଉନାହିଁ । ରାସ୍ତାଟି ସୁନ୍ଦର ନିଷ୍ଟୟ; ମାତ୍ର ମନେହେଉନାହିଁ ସୁଗମ ବୋଲି । ସେଇ ରାସ୍ତାରେ ଚାଲିଥିଲେ ଦୁଇଟି ପଥିକ । ସ୍ତ୍ରୀଟିଏ ଓ ପୁରୁଷଟିଏ । ଉଭୟେ ସ୍ୱାମୀ ସ୍ତ୍ରୀ । ସ୍ୱାମୀର ମୁଣ୍ଡରେ ଗୋଟାଏ ବଡ଼ ବୋଝ । ତାକୁ ବହୁତ ବାଟ ଯିବାକୁହେବ—ବୋଝଟା ବି ଖୁବ୍ ଓଜନିଆ—ଏଣେ ସାଙ୍ଗରେ ସ୍ତ୍ରୀଲୋକଟି ରହିଛି । ତାକୁ ମଧ ନିରାପଦରେ ନେବାକୁହେବ; କାରଣ ସ୍ତ୍ରୀଟି ଗର୍ଭବତୀ । ସେମାନେ କୋଉଠି ଯାଇ ପହଞ୍ଚିବେ ସେକଥା ସେମାନଙ୍କୁ ଜଣା; ମାତ୍ର ଆଖପାଖରେ କୌଣସି ପାନ୍ଥଶାଳା ଥିଲାପରି ମନେହେଉନାହିଁ । ଅଉ ଅଳ୍ପ ସମୟ ଗଲେ ହୁଏତ ରାତି ଆସିଯିବ । ଚତୁର୍ଦ୍ଦିଗରେ ଘୋର ଅରଣ୍ୟ । ପତରଟିଏ ପଡ଼ିଲେ ପଥରଟିଏ ପଡ଼ିଲାଭଳି ଶୁଭୁଛି । ସ୍ୱାମୀର ମନରେ ଯଥେଷ୍ଟ ଭୟ—ମାତ୍ର ଭୟକୁ ମନରେ ଚାପି ଏତେବଡ଼ ବୋଝ ସତ୍ତ୍ୱେ ସେ ଆପଣାର ସୁନ୍ଦରୀ ଅଥଚ ଗର୍ଭଭାର-ପୀଡ଼ିତା ସ୍ତ୍ରୀଟିକୁ ଯଥେଷ୍ଟ ସାହସ ଓ ନିର୍ଭୟ ଦେଇ ତାର ହାତ ଧରି ଧରି ଚାଲିଛି । ମଝିରେ ମଝିରେ ସ୍ତ୍ରୀଟି ଅଟକିପଡ଼ିଲେ, ଭୟ ପାଇଲେ ସ୍ୱାମୀ ତାକୁ ଆଉଜେଇ ନେଇ କହୁଛି—ଭୟ କରନା ! ମୁଁ ଅଛି । ସ୍ତ୍ରୀଟି ସାମାନ୍ୟ ଆହ୍ଲାଦରେ କହୁଛି—କିନ୍ତୁ ମୋ ପାଇଁ ସିନା ତୁମେ ଅଛ—ତୁମ ପାଇଁ କିଏ ଅଛି ? ଯଦି ରାତି ହୋଇଯାଏ ? ଯଦି ମୋର ଗର୍ଭବେଦନା ଆରମ୍ଭ ହୋଇଯାଏ, ଯଦି ହିଂସ୍ର ଜନ୍ତୁମାନେ ରାତିରେ ବଣ ଭିତରୁ ବାହାରିପଡ଼ନ୍ତି, ଯଦି ଦସ୍ୟୁମାନଙ୍କ ହାତୁଡ଼େ ଆମେ ପଡ଼ିଯାଉ ?

ଅନୁରକ୍ତ ପ୍ରେମିକ ସ୍ୱାମୀଟି ସ୍ତ୍ରୀକୁ ଟିକିଏ ପାଖକୁ ଭିଡ଼ିଧରି କହୁଛି—ସବୁ ଭୟ ଅଛି ରାଣୀ ! ଭୟ-ନିବାରଣ-କର୍ତ୍ତା ବି ଅଛନ୍ତି ତା' ସଙ୍ଗେ ସଙ୍ଗେ । ମୋର କିଛି ଭୟ ନାହିଁ ରାଣୀ ! ମୁଁ ତୁମକୁ ଭଲପାଏ ଓ ମୁଁ ବଞ୍ଚିଥିବାଯାଏ ତୁମକୁ ହିଂସ୍ରଜନ୍ତୁ ବା ଦସ୍ୟୁମାନଙ୍କ ହାତରେ ଛାଡ଼ିଦେଇ ମୁଁ କୁଆଡ଼େ ପ୍ରାଣଭୟରେ ପଳାଇବିନାହିଁ । ମୋର ହୃଦୟ ଏଥିରେ ନିଶ୍ଚିନ୍ତ; ଏବଂ ତୁମ ପ୍ରତି ମୋର ଏତିକି ପ୍ରେମ ଓ ମୋ ଉପରେ ମୋର ଏତିକି ଆତ୍ମବିଶ୍ୱାସ ଓ ପ୍ରତିଜ୍ଞା ହିଁ ମୋର ଏହି ନିର୍ଜନ ଭୟସଙ୍କୁଳ ଅରଣ୍ୟ ଭିତରେ ଏକମାତ୍ର ରକ୍ଷାକବଚ । ଆଉ ଜାଣ, ଏହି ରକ୍ଷାକବଚ ଭିତରେ ସ୍ୱୟଂ ଭଗବାନ ବିପଦଭଞ୍ଜନ ରୂପେ ସୂକ୍ଷ୍ମଭାବେ ରହିଥାନ୍ତି । ଭୟ କଣ ସଖୀ ! ନିର୍ଦ୍ୱନ୍ଦ୍ୱରେ ଚାଲ । ଅସ୍ଥିର ହୁଅ ନାହିଁ । ବିଶ୍ୱାସ ହରାଅନାହିଁ । ସ୍ତ୍ରୀଟି କିଛି ଉତ୍ତର ନ କରି ଧୀରେ ଧୀରେ ଚାଲିଲା । ବଣ ଭିତରୁ ଗୋଟିଏ ପାଖରୁ ଅରଣ୍ୟ-ଚଢ଼େଇଟିଏ ବୋବେଇଉଠିଲା ଏବଂ ସାଙ୍ଗେ ସାଙ୍ଗେ ରାସ୍ତାର ଆରପଟୁ ତାର ସାଙ୍ଗ ଚଢ଼େଇଟି ମଧ୍ୟ ତାର ପ୍ରତ୍ୟୁତ୍ତରରେ ବୋବେଇଉଠିଲା । ବଣ ଭିତରେ ସେମାନେ ପରସ୍ପର ଭିତରେ କଣ କଥା ହେଲେ ତାହା ସେହି ବନର ଅଧିଷ୍ଠାତ୍ରୀ ବନଦେବୀଙ୍କୁ ଜଣା ।

ଏଣେ ପାହାଡ଼ିଆ, ଉଚ୍ଚଭୂମି ଉପରେ ପୂର୍ବୋକ୍ତ ଆଲିଆ, କାଲିଆ ଓ ବାଲିଆ ଏକାଠି ଠିଆହୋଇ ଦୂରରୁ ଏହି ସ୍ୱାମୀ-ସ୍ତ୍ରୀଙ୍କୁ ଲକ୍ଷ୍ୟ କରୁଥିଲେ । ହଠାତ୍ ଆଲିଆ କହିଲା—ବାଲିଆ ରେ ! କାଲିଆରେ ! ଦେଖିଲଣି ସେଠି କିଏ ଦୁଇଜଣ ହସଖୁସିହୋଇ ଚାଲିଛନ୍ତି ? ବାଲିଆ କାଲିଆ ଦୁହେଁ କାହାକୁ ବେକଟିମାନ ଟେକି ଚାହିଁଲେ ।

ବାଲିଆ କହିଲା—କାଲିଆ ରେ ! ଅପୂର୍ବ ନାରୀଟିଏ ଗୋଟିଏ ପୁରୁଷର ହାତ ଧରି ଚାଲିଛି । ସେମାନଙ୍କୁ ଦୈବ ଛାଡ଼ିଲାଣି କିରେ ?

କାଲିଆ କହିଲା—ବାଲିଆ ରେ ! ସେ ପୁରୁଷଟା ସେ ସ୍ତ୍ରୀଲୋକଟିର ସ୍ୱାମୀ ହେଲାପରି ଲାଗୁଛି । ତାକୁ ଜୀବନ ପିତା ଲାଗିଲାଣି ।

ବାଲିଆ କହିଲା—ଅରେ କାଲିଆ ! ଆରେ ଆଲିଆ ! ଶୁଣ ଶୁଣ । ଆମେ ଥାଉଁ ଥାଉଁ ଏ ରାଜ୍ୟରେ ଏହି ଅପୂର୍ବ ସ୍ତ୍ରୀଲୋକଟିର ସ୍ୱାମୀପଣରେ କେହି ଭାଜନ କି ? ଆମେ ସିନା ଅପୂର୍ବ ନାରୀଙ୍କର ସ୍ୱାମୀ ହେବାକୁ ଜନ୍ମିଥାଉଁ । ଆମେ ବଂଚ ଥାଉଁ ଥାଉଁ ଆମ ଆଗରେ କିଏ ସ୍ୱାମୀପଣ କରି ଅପୂର୍ବ ନାରୀମାନଙ୍କୁ ଭୋଗକରିବ—ଏକଥା କେବେ ହୋଇପାରେ ? ଆରେ କାଲିଆ ! ଆରେ ଆଲିଆ ! ଧର ବର୍ଚ୍ଛା, ଧର ଖଣ୍ଡା, ଧର ଟାଙ୍ଗିଆ । ଚାଲ, ଶୀଘ୍ର ଚାଲ—ଏକାଠି ମେଳି ହୋଇ ସେଇ ଦୁବଲିଆ ପୁରୁଷଟାକୁ ମାରି ଜଙ୍ଗଲକୁ ଫୋପାଡ଼ିଦେବା । ତା'ପରେ ସେଇ ଅପୂର୍ବ ରମଣୀଟିର ସ୍ୱାମୀ ହୋଇ ତାକୁ ଭୋଗକରିବା ।

ଏତିକି ଶୁଣିବାମାତ୍ରେ ଆଲିଆ କାଲିଆ ବାଲିଆଙ୍କ ମନଭିତରେ କାମ ଓ କ୍ରୋଧ ଜଳିଉଠିଲା । ସେମାନେ ସାଙ୍ଗରେ ରଖିଥିବା ମାଠିଆରୁ ମୁହଁ ଲଗାଇ ଚଁ-ଚଁ କରି ପେଟେ

ପେଟେ ମଦ ପିଇଗଲେ । ମଦ ପିଇଲାବେଳେ ସେମାନେ ପାଟି ଓ ନାକ ଉଭୟ ବାଟେ ପିଇଥାନ୍ତି । ତା'ପରେ ସେମାନେ ସେମାନଙ୍କର ରୀତି ଅନୁସାରେ ଘନ ଘନ ଶିଙ୍ଗା ବଜାଇଲେ । ସେହି ଭୟଙ୍କର ଶିଙ୍ଗାନାଦରେ ବନଭୂମି କମ୍ପି ଉଠିଲା । ଗଛରୁ ପକ୍ଷୀମାନେ ଝଡ଼ିପଡ଼ିଲେ । ଚଢ଼େଇମାନେ ବୃକ୍ଷ ଆଶ୍ରା ଛାଡ଼ି ପ୍ରାଣବିକଳରେ ଦୂର ଆକାଶକୁ ଉଡ଼ିଗଲେ । ବନର ଜନ୍ତୁମାନେ ଅତର୍କରେ ଏଣେତେଣେ ଦୌଡ଼ିପଳାଇଲେ ।

ପାହାଡ଼ ତଳଦେଶର ପଛପଟୁ ଏହି ମୁହୁର୍ମୁହୁଃ ଶିଙ୍ଗାନାଦ ଶୁଣି ସ୍ତ୍ରୀଲୋକଟି ଭୀତା କପୋତୀ ପରି ସ୍ୱାମୀକୁ କୁଣ୍ଢାଇଧରିଲା—ଶୁଣୁଛ ? ଏ କ'ଣ ଶୁଭୁଛି ! ଏ ଡକାୟତମାନଙ୍କ ଶିଙ୍ଗାନାଦଭଳି ମନେହେଉଛି । ଆମେ ବର୍ତ୍ତମାନ କ'ଣ କରିବା ? କୋଉଠି ଲୁଚିବା ? ସେମାନେ ହେଇ ଘୋଡ଼ାରେ ଚଢ଼ି ଆମ ପଛେ ପଛେ ଝପଟି ଆସିଲେଣି । ସେମାନଙ୍କ ହାତରେ ମାରାତ୍ମକ ଅସ୍ତ୍ରଶସ୍ତ୍ର ! ଓଃ ! ମାଲେ ! ସେମାନେ ଏତେଦୂରରୁ ବି କି ଭୀଷଣ ଦେଖାଯାଉଛନ୍ତି ! ଓଃ, କି ଭୟଙ୍କର ସେମାନଙ୍କର ଚିତ୍କାର ! ଦେଖ ! ମୁଁ ତୁମ ଗୋଡ଼ ତଳେ ପଡ଼ୁଛି—ତୁମେ ମୋତେ ଏଠି ଛାଡ଼ିଦେଇ ବଣ ଭିତରକୁ ପଳାଇଯାଅ । ଗଛ-ଗହଳରେ କୋଉଠି ନା କୋଉଠି ଲୁଚିଯାଇ ନିଜର ପ୍ରାଣରକ୍ଷା କର । ଯାଅ ଯାଅ ଚଞ୍ଚଳ, ପଳେଇଯାଅ—ସେମାନେ ନିକଟେଇ ଆସିଲେଣି । ସେମାନେ ତୁମକୁ ମାରିପକାଇବେ । ଓଃ ! ଯାଅ କହୁଛି । ପଳାଇଯାଅ ମୋ ଧନ ! ମୋତେ ମୋ ଦୁର୍ଭାଗ୍ୟ ଏକା ଭୋଗ କରିବାକୁ ଛାଡ଼ିଦିଅ । ଆଜି ମୁଁ ଧର୍ଷିତା ହେବି—ଅପହୃତା ହେବି । ହଁ, ତା' ହେବ । ତୁମେ ମତେ ଛାଡ଼ି ଏହି ବଣକୁ ପଳାଇଯାଅ—ପଳାଇଯାଅ ମୋ ଧନ ! ଓଃ, ପଳାଇଯାଅ !

ସ୍ୱାମୀଟି ଗୋଟିଏ ଦୁଇଟି ମୁହୂର୍ତ୍ତ ସ୍ଥିରହୋଇ ଠିଆହୋଇଗଲା ଏବଂ ପ୍ରିୟତମା ସ୍ତ୍ରୀର ମୁହଁକୁ ଚାହିଁ କହିଲା—ଶୁଣ । ତା' ଯଦି ତୁମ ମନ୍ଦ ଅଦୃଷ୍ଟରେ ଥାଏ, ତେବେ ହୁଏତ ତାହା ହିଁ ହେବ । କିନ୍ତୁ ମୁଁ ତୁମକୁ ଛାଡ଼ି ଚାଲିଯାଇ କି ପୌରୁଷ ଧରି ଅବଶିଷ୍ଟ ଜୀବନ ବଂଚିବି ? ସେମାନେ ମୋତେ ମାରିଦିଅନ୍ତୁ ଓ ତା'ପରେ ତୁମେ ତୁମର ମନ୍ଦ ଅଦୃଷ୍ଟ ଭୋଗକର । ମୁଁ ଜାଣେ—ତୁମ ପ୍ରତି ମୋର ଆନ୍ତରିକ ଅନୁରକ୍ତି ବା ପ୍ରେମ ବ୍ୟତୀତ ମୋ ପାଖରେ ଆଉ କିଛି ଅସ୍ତ୍ର ନାହିଁ । ଆଉ କିଛି ବଳ ମଧ୍ୟ ନାହିଁ । ମୁଁ କୌଣସି କଳକୌଶଳ ମଧ୍ୟ ଜାଣେନାହିଁ । କିନ୍ତୁ ମୁଁ ଗୋଟିଏ କଥା ଜାଣେ—ମନ୍ଦଗ୍ରହମାନେ ଏକାଠି ହେଲେ ଅଳିଆ, କାଳିଆ ଓ ବାଳିଆମାନେ ଏକାଠି ହୁଅନ୍ତି । ଧର୍ଷଣ କରି ଭୋଗକରିବା ହିଁ ସେମାନଙ୍କର ଏକମାତ୍ର ଅଭିଳାଷ । ଏହି ଦୁଷ୍ଟ ଅଭିଳାଷ ସେମାନଙ୍କୁ ଏକାଠି କରିଛି । ତଥାପି କିଛି ଭୟ କରନାହିଁ —ଯାହା ହେବାର ହେଉ, ମୁଁ ତୁମକୁ ଧର୍ଷିତା ହେବାକୁ ଛାଡ଼ିଦେଇ ନିରାପଦରେ ରହିବାକୁ ପଳାଇଯିବି ନାହିଁ । ମୋର ପ୍ରାଣ ଏତେ ମୂଲ୍ୟବାନ୍ ନୁହେଁ । କିନ୍ତୁ ତୁମେ ମଧ୍ୟ ଏହି ମୁହୂର୍ତ୍ତରେ ସ୍ୱାଧୀନ ବୋଲି ମନେକର । ତୁମେ ନିଜର ପ୍ରାଣ ଓ ମର୍ଯ୍ୟାଦା ରକ୍ଷା କରିବାକୁ ଏଠାରୁ ପଳାୟନ କରି ଜଙ୍ଗଲ ଭିତରେ ଆତ୍ମଗୋପନ କରିପାର, କିମ୍ବା ସେମାନଙ୍କ ମଧ୍ୟରୁ ଜଣକୁ ବା ସମସ୍ତଙ୍କୁ ପତିପଦରେ ବରଣକରି ସେମାନଙ୍କର ମନୋହରଣ କରି ସୁଖରେ

କାଲାତିପାତ କରିପାର ? ତୁମର ସ୍ୱାମୀପଦରେ ପ୍ରତିଷ୍ଠିତ ହେବାର ଗୌରବ ଅପେକ୍ଷା ମୁଁ ବରଂ ତୁମକୁ ଯେକୌଣସି ପ୍ରକାରେ ସୁଖୀ ହୋଇ ବଞ୍ଚିବାର ଦେଖିଲେ ଅଧିକ ଖୁସି ହେବି । ଯାଅ—ହେଇ ସେମାନେ ଖୁବ୍ ନିକଟ ହୋଇଆସିଲେଣି । ଆଉ ସମୟ ନାହିଁ । ତୁମେ ଖୁବ୍ ଶୀଘ୍ର ତୁମର କର୍ତ୍ତବ୍ୟ ସ୍ଥିରକର ।

ସ୍ତ୍ରୀଲୋକଟି ହଠାତ୍ କହିଁକରି ହୋଇ କାନ୍ଦିଉଠିଲା । ମାତ୍ର ସ୍ୱାମୀଟି ଖୁବ୍ ସ୍ଥିର ଓ ଦୃଢ଼ତାର ସହିତ ସ୍ତ୍ରୀର ହାତ ଧରି ଯଥାରୀତି ରାସ୍ତାରେ ଚାଲିଥାଏ । ସେମାନେ ଦୌଡ଼ୁନଥାନ୍ତି—ଚିତ୍କାର କରୁ ନଥାନ୍ତି କିମ୍ବା ଭୟତା ଓ ବିବ୍ରତତା ପ୍ରକାଶ କରୁନଥାନ୍ତି । କାରଣ ଆଶୁ ଭବିତବ୍ୟତା ହାତରେ ସେମାନେ ନିଜକୁ ସ୍ୱତଃ ସମର୍ପଣ କରିଦେଇଥିଲେ ।

କ୍ରମଶଃ ଘୋଡ଼ାମାନଙ୍କର ଟାପୁଶବ୍ଦରେ ବନଭୂମି ଚକିତ ହୋଇଉଠିଲା । ଆଲିଆ, କାଲିଆ ଓ ବାଲିଆ ନିସ୍ତବ୍ଧ ବନଭୂମିରେ ଆପଣା ଘୋଡ଼ାଙ୍କ ଘନ ଘନ ଟାପୁଶବ୍ଦ ଶୁଣି, ପରସ୍ପରର ଶିଂଗାନାଦ ଶୁଣି ଓ ଆଗରେ ଅପୂର୍ବ ନାରୀରତ୍ନଟିକୁ ଦେଖି ମନେ ମନେ ଖୁବ୍ ଉତ୍ତେଜିତ ହୋଇଉଠିଲେ । ଆଉ ମାତ୍ର କେତୋଟି ଗଜ ପରେ ସେମାନେ ସେହି ସ୍ୱାମୀ-ସ୍ତ୍ରୀ ଦୁହିଁଙ୍କୁ ନିଜ ଅକ୍ତିଆର ଭିତରକୁ ନେଇଆସିବେ । ସ୍ୱାମୀ-ସ୍ତ୍ରୀ ଦୁଇଜଣ କିନ୍ତୁ ପୂର୍ବବତ୍ ସ୍ଥିରଭାବେ ଚାଲିଯାନ୍ତି । ସେମାନେ ପରସ୍ପରକୁ ଅଭୟ ଦେଇସାରିଛନ୍ତି—ପରସ୍ପରକୁ ମୁକ୍ତ ମଧ୍ୟ ଦେଇଛନ୍ତି । ତେଣୁ ଆଉ ବିଚଳିତ ହେବାର କିଛି ନାହିଁ—ଆଉ ଭୟ ବିବ୍ରତ ବା ଦ୍ୱିଧାନ୍ୱିତ ହେବାର ମଧ୍ୟ କିଛି ନାହିଁ । ଭବିତବ୍ୟ ବର୍ତ୍ତମାନ ପ୍ରାୟ ନିକଟରେ । ତେଣୁ ଯାହା ହେବାର ତା'ହୋଇଯାଉ ଏବଂ ଏଇ ଅନୁଭୂତି ଭିତରେ ସେମାନେ ସହସା ଆଉ ଗୋଟିଏ ବିଶେଷ ଧରଣର ଅଭୟ ବାଣୀ ମଧ୍ୟ ନିଜ ଭିତରେ ଶୁଣିବାକୁ ପାଇଲେ । ତାହା ହେଉଛି—"ଦେଖ ! ଦୁହେଁଯାକ ସ୍ଥିର ଓ ନିର୍ଭୟ ରହ । ବିଶ୍ୱାସ ରଖ ।"

ଆଲିଆ, କାଲିଆ ଓ ବାଲିଆ ତିନିଜଣଯାକ ଅଶ୍ୱପୃଷ୍ଠରେ ଥାଇ ସେମାନଙ୍କୁ ଏକାଥରେ ଘେରିଗଲେ ଓ ବର୍ଚ୍ଛା ଦେଖାଇ ସ୍ୱାମୀଟି ଉଦ୍ଦେଶ୍ୟରେ କହିଲେ, "ହେ ପାଷଣ୍ଡ ! ଏ ଅପୂର୍ବ ସ୍ତ୍ରୀକୁ ଧରି ତୁ କିଏ, କୁଆଡ଼େ ଯାଉଛୁ ?"

ସ୍ୱାମୀଟି ନିର୍ଭୟରେ ଦୃଢ଼ ସ୍ୱରରେ କହିଲା—ଏ ସ୍ତ୍ରୀଟି ମୋତେ ସ୍ୱାମୀପଦରେ ବରଣ କରିଛି । ସେ ମୋର ସ୍ତ୍ରୀ । ଆମ୍ଭେମାନେ ବହୁତ ଦୂର ଯିବୁ । କିନ୍ତୁ ଆପଣମାନଙ୍କର ଉଦ୍ଦେଶ୍ୟ କଣ ?

କାଲିଆ ନିର୍ଲଜ୍ଜଭାବେ କହିଲା—ସ୍ତ୍ରୀମାନଙ୍କ ଲାଗି ସ୍ୱାମୀପଦ ଚିରସ୍ଥାୟୀ ନୁହେଁ । ତୁ ଶୀଘ୍ର ଏ ସ୍ତ୍ରୀକୁ ଛାଡ଼ି ପଳା । ଆମ୍ଭେମାନେ ଏ ସ୍ତ୍ରୀଟିକୁ ନେବୁ । ଯଦି କଥା ନମାନୁ, ତେବେ ଆମେ ତୋତେ ମାରିଦେବୁ ଓ ଏ ସ୍ତ୍ରୀକୁ ନେଇ ଉପଭୋଗ କରିବୁ ।

ସ୍ୱାମୀ କହିଲା—ମୁଁ ଜାଣେ, ତୁମେ ମୋତେ ମାରିଦେଇପାରିବ ଓ ମାରିଦେବ ମଧ୍ୟ । ବେଶ୍, ତାହାହିଁ କର । କିନ୍ତୁ ତୁମେ ଆଗ ଏ ସ୍ତ୍ରୀଲୋକଟିକୁ ପଚାର—ସେ ତୁମମାନଙ୍କ ସଙ୍ଗେ ଯିବାକୁ ଚାହେଁ କି ନାହିଁ ।

ଆଳିଆ କହିଲା—ସ୍ତ୍ରୀଲୋକଙ୍କ ମତାମତ ନେଇ ଆମ୍ଭେମାନେ ଉପଭୋଗ କରୁନାହିଁ । ତୁ ଶୀଘ୍ର ସ୍ତ୍ରୀକୁ ଆମ ପାଖରେ ଛାଡ଼ି ପଳାଇଯା । ଜୀବନ ପ୍ରତି ଲୋଭ ଅଛି ତ ଜୀବନ ରକ୍ଷାକର ଆଗ ତୋ' ନିଜର ।

ବାଳିଆ କହିଲା—ଓଃ ! ମୋର ଏତେ କଥାବାର୍ତ୍ତା ହେବାକୁ ଆଉ ଧୈର୍ଯ୍ୟ ନାହିଁ । ଖାଇବା ଦ୍ରବ୍ୟକୁ ଆଗରେ ରଖି ମୁଁ ଆଉ ଏତେ ସମୟ ଅପେକ୍ଷା କରିପାରିବି ନାହିଁ । ଶୀଘ୍ର ମୁଁ ଏହାକୁ ମୋର ବର୍ଚ୍ଛା ମୁନରେ ହତ୍ୟାକରି ଏ ଅପୂର୍ବ ନାରୀଟିକୁ ଭୋଗକରିବି । ଏହା କହି ସେ ତାର ବର୍ଚ୍ଛା ଉଦ୍ୟତ କଲା ।

ମାତ୍ର ବାଳିଆର ଉଦ୍ୟତ ବର୍ଚ୍ଛା ଆଗରୁ ସ୍ୱାମୀଙ୍କୁ ଝିଂକ ନେଇଗଲା ସ୍ତ୍ରୀଟି ଏବଂ ନିଜେ ବାଳିଆର ସମ୍ମୁଖରେ ଠିଆହୋଇ କହିଲା—ହେ ପାଷଣ୍ଡ ! ଦୁର୍ବୃତ୍ତଗଣ ! ମୋର ସ୍ୱାମୀଙ୍କୁ ମୋ ଆଗରେ ହତ୍ୟାକଲେ ମଧ୍ୟ ତୁମେମାନେ ମୋତେ ପାଇବନାହିଁ । ତା ଅପେକ୍ଷା ମୁଁ ତୁମ୍ଭମାନଙ୍କୁ ଗୋଟିଏ ସର୍ତ୍ତ ଦେଉଛି—ତାକୁ ପାଳନ କରିପାରିଲେ ମୁଁ ତୁମ୍ଭମାନଙ୍କର ଉପଭୋଗ୍ୟା ହେବି ।

କାଳିଆ, ବାଳିଆ ଓ ଆଳିଆ ତିନିଜଣଯାକ ଏକସ୍ୱରରେ କହିଲେ—ଶୀଘ୍ର ତୋର ସର୍ତ୍ତ ପ୍ରକାଶ କର । ଆମକୁ କାମଦେବ ଅସ୍ଥିର କଲେଣି । ତୋର ଏହି ରୂପ ଆଗରେ ବେଶି କ୍ଷଣ ସ୍ଥିର ହୋଇ ଠିଆହେବା ଆଉ ଅପେକ୍ଷା କରିବା ଆମପକ୍ଷରେ ଅସମ୍ଭବ ।

ସ୍ତ୍ରୀଟି କହିଲା—ତା'ହେଲେ ଶୁଣ । ମୋର ସ୍ୱାମୀ ଯେଉଁ ବୋଝଟି ମୁଣ୍ଡାଇଛନ୍ତି, ତାକୁ ଯେ ତାଙ୍କ ମୁଣ୍ଡରୁ ଆଣି ଆପଣା ମୁଣ୍ଡରେ ବହନ କରି ମୋ ସାଙ୍ଗରେ ଅବଶିଷ୍ଟ ବାଟ ଚାଲିପାରିବ, ମୁଁ ତାକୁଇ ମୋର ପତିପଦରେ ବରଣ କରିବି । ଏହା ମୋର ତ୍ରିବାର ସତ୍ୟ । ଏହି ବଣର ବୃକ୍ଷଲତା ଓ ସ୍ୱୟଂ ବନଦେବୀ ଏ କଥାର ସାକ୍ଷୀ ଅଛନ୍ତି ।

ସ୍ତ୍ରୀଟି ଏତିକି କହିବା ମାତ୍ରେ ସର୍ବପ୍ରଥମେ କାଳିଆ ତାର ବର୍ଚ୍ଛା ଦ୍ୱାରା ସ୍ୱାମୀଟିର ମୁଣ୍ଡରୁ ସେଇ ବୋଝଟିକୁ ଖସାଇଦେଲା । ବୋଝଟି ତଳେ ଖସିପଡ଼ିଲା ଏବଂ ତଳେ ଖସିପଡ଼ିବା ମାତ୍ରେ ଆଳିଆ, କାଳିଆ ଓ ବାଳିଆ ତିନିହେଁ ଯାକ ଘୋଡ଼ାରୁ ଓହ୍ଲାଇ ଭୂପତିତ ବୋଝଟିକୁ ନିଜ ମୁଣ୍ଡ ଉପରକୁ ଟେକିନେବାଲାଗି ତତ୍ପର ହୋଇଉଠିଲେ । ପ୍ରଥମେ ଆଳିଆ ବୋଝଟିକୁ ତଳୁ ଉଠାଇ ନେଇଥିଲା । ତା'ପରେ ବାଳିଆ ତାକୁ ଠେଲିଦେଇ ତା'ଠାରୁ ବୋଝଟିକୁ ଛଡ଼ାଇ ନିଜ ମୁଣ୍ଡ ଉପରକୁ ଟେକିବା ମାତ୍ରେ କାଳିଆ ଚଢ଼ିକି ଆସି ତାର ଖଣ୍ଡାରେ ବାଳିଆର ମୁଣ୍ଡଟାକୁ ବେକରୁ ଉଡ଼ାଇଦେଲା ଏବଂ ନିଜେ ବୋଝଟିକୁ ନିଜ ମୁଣ୍ଡ ଉପରକୁ ଟେକିବାପାଇଁ ତଳୁ ଗୋଟାଇ ଧରିଲା । ଏହା ଦେଖି ଆଳିଆ ତାର ବର୍ଚ୍ଛା ଧରି କାଳିଆ ଆଡ଼କୁ ଚଢ଼ିକି ଆସିଲା ଏବଂ ବୋଝଟି ତଳେ ପକାଇ କାଳିଆ ତାର ଖଡ୍ଗ ସହ ଆଳିଆକୁ ଆକ୍ରମଣ କଲା । ଆଳିଆ ଓ କାଳିଆ ଘୋରତର ଯୁଦ୍ଧରେ ମାତିଗଲେ ।

ଏହି ସମୟରେ ଗୋଟିଏ ଅଦ୍ଭୁତ ଘଟଣା ମଧ୍ୟ ନାଟକୀୟ ଭାବେ ଘଟିଗଲା । ହଠାତ୍ ପର୍ବତ ଶିଖର ଆଡ଼ୁ ଗୋଟାଏ ତୋଫାନ ମାଡ଼ିଆସିଲା । ବନଭୂମି ପ୍ରଥମେ ଧୂଳିରେ ପୂର୍ଣ୍ଣ ହୋଇଗଲା । ଏତେ ଧୂଳି ଓ ଶୁଷ୍କପତ୍ର ଉଡ଼ିଲା ଯେ କେହି କାହାକୁ ଦେଖିପାରିଲେନାହିଁ । ଏବଂ କିୟତ୍‌କ୍ଷଣ ଭିତରେ ବାତ୍ୟାସହ ଘୋର ବୃଷ୍ଟି ମଧ୍ୟ ଆରମ୍ଭ ହୋଇଗଲା । ଏଣେ ସନ୍ଧ୍ୟାର ଅନ୍ଧକାର ମଧ୍ୟ ଘନୀଭୂତ ହୋଇଆସିଲା । ବନଭୂମି ବାତ୍ୟା-ଦୋଳିତ ଓ ବର୍ଷାଚ୍ଛାଦିତ ହୋଇଗଲା । ତଥାପି ଆଲିଆ ଓ କାଲିଆ ଘୋର ଦ୍ୱନ୍ଦ୍ୱଯୁଦ୍ଧରେ ମାତିଥାନ୍ତି । ଏଣେ ଘୋଡ଼ାମାନେ ଭୟ ଅତୁଚ୍ଛରେ କିଏ କୁଆଡ଼େ ହ୍ରେଷାରବ କରି ପଳାଇଗଲେ । ତଥାପି ଆଲିଆ କାଲିଆ ଦୁହେଁ ଲଢ଼ୁଥାନ୍ତି । ସେମାନଙ୍କ ଦେହ ରକ୍ତାକ୍ତ ହୋଇ ଯାଇଥାଏ । ମୂଷଳଧାରାର ବର୍ଷାରେ ସେମାନେ ଜୁଡ଼ୁବୁଡ଼ୁ ହୋଇ ଯାଉଥାନ୍ତି । ମାତ୍ର ସେମାନଙ୍କ ଭିତରେ କାମଦ୍ୱେଗ-ଲାଳସା ଘୋର କ୍ରୋଧରେ ପରିଣତ ହୋଇ ଯାଇଥାଏ । ତେଣୁ ସେମାନଙ୍କର ସାମାନ୍ୟ ମାନବିକ ଚେତନା ମଧ୍ୟ ଲୋପ ପାଇଯାଇଥାଏ । ଦୁଇଟି ହିଂସ୍ର-ବନ୍ୟ ପ୍ରାଣୀପରି ସେମାନେ ଲଢ଼ୁଥାନ୍ତି ।

ହଠାତ୍ ବନଭୂମିକୁ ବର୍ତ୍ତିମୟ କରି ଏକ ବିଶେଷ ଧରଣର ବଜ୍ରପାତ ହେଲା । ତାର ଭୟଙ୍କର ଶବ୍ଦରେ ସ୍ୱାମୀ-ସ୍ତ୍ରୀ ଦୁଇଜଣଯାକ ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ । ବଜ୍ର ଶବ୍ଦରେ ବନଭୂମି କମ୍ପି ଉଠିଲା ଓ ଏକସଙ୍ଗେ ଦୁଇଟି ଆର୍ତ୍ତ ଚିତ୍କାର ବନାକାଶକୁ ଥରାଇଦେଲା ।

ସମସ୍ତ ରାତି ସେ ଦୁହେଁ ମୂର୍ଚ୍ଛିତ ହୋଇ ସେଇ ବଣ ଭିତରେ ପଡ଼ିଥିଲେ । ତା'ପରେ କିଛିକାଳ କଟିଗଲା ପରେ ସକାଳର ସୂର୍ଯ୍ୟକିରଣ ସ୍ତ୍ରୀଟିର ମୁହଁରେ ପଡ଼ିବା ମାତ୍ରେ ତାର ନିଦ ଭାଙ୍ଗିଗଲା ।

ସେ ହଠାତ୍ ଉଠିପଡ଼ି ଦେଖିଲା—ତାର ସ୍ୱାମୀ ଘୋର ନିଦରେ ଶୋଇଗଲା ପରି ପଡ଼ିରହିଛନ୍ତି । ସେ ତାଙ୍କୁ ଆଲିଙ୍ଗନ କରି ଚେତାକରାଇଲା । ସ୍ୱାମୀଟି ଘୋର ନିଦ୍ରା ଓ ସ୍ୱପ୍ନରୁ ଉଠିଲାପରି ପଚାରିଲେ—ଆମେ କେଉଁଠି ବର୍ତ୍ତମାନ ? ହେ ଭଗବାନ ! ସେମାନେ ତୁମକୁ ନେଇଯାଇନାହାନ୍ତି ? ତୁମେ ଜୀବିତ ଅଛ ନା ମୁଁ ତଥାପି ସ୍ୱପ୍ନ ଦେଖୁଛି ?

ସ୍ତ୍ରୀଟି କହିଲା—ନା' ! ସେଇ କାଳରାତି ପାହିଯାଇଛି । ସେହି ଦୁର୍ବୃତ୍ତ ଦୁଇଜଣ ଦେଖ ସେଠାରେ ବଜ୍ରାହତ ହୋଇ ଅର୍ଦ୍ଧଦଗ୍ଧ ଅବସ୍ଥାରେ ପଡ଼ିଛନ୍ତି । ବୋଧହୁଏ ସେମାନେ ମରିଯାଇଛନ୍ତି ।

ତାପରେ ସ୍ୱାମୀଟି ତାର ସ୍ତ୍ରୀକୁ ଆଲିଙ୍ଗନ କରି ଚୁମାଦେଲା ଏବଂ ଦୁହେଁ ଏକାସ୍ୱରରେ ସେହି ଭୀଷଣ ରାତିର ଓ ଏହି ରମଣୀୟ ସ୍ୱର୍ଣ୍ଣ ସକାଳର ସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ଆଣ୍ଠୁମାଡ଼ି ପ୍ରାର୍ଥନା କଲେ—କୃତଜ୍ଞତା ଜଣାଇଲେ । ସେଇଠୁ ସ୍ୱାମୀଟି କହିଲା—ପ୍ରିୟେ ! ଗତ ରାତିର ସେହି ଦୁଇଜଣ ଦସ୍ୟୁ ହେଉଛନ୍ତି କାମକ୍ରୋଧ, ଲୋଭମୋହ ଓ ମଦମାତ୍ସର୍ଯ୍ୟର ପ୍ରତିନିଧି । ଗତ ରାତିରେ ପରସ୍ପର ବିବାଦରେ ମଦମାତ୍ସର୍ଯ୍ୟର ପ୍ରତିନିଧିଟିର ପ୍ରଥମେ ବିନାଶ ଘଟିଲା

ଏବଂ ଦୈବୀ ହସ୍ତକ୍ଷେପ ଫଳରେ କାମକ୍ରୋଧ ଓ ଲୋଭମୋହର ଦୁଇ ପ୍ରତିନିଧି ସେଠାରେ ଏକାଠ ମରି ପଡ଼ିଛନ୍ତି । ଆମ ବୋଟ୍‌ଟି ଆମ ପାଖରେ ତଥାପି ପଡ଼ିରହିଛି । ଆଉ କାଳବିଳମ୍ବ ନକରି ଚାଲ ବୋଟ୍‌ଟିକୁ ଧରି ଆମ ଗନ୍ତବ୍ୟ ପଥରେ ଧୀରେ ସୁସ୍ଥେ ଆଗେଇ ଯିବା । ଈଶ୍ୱର ହିଁ ବଳବାନ୍ । ସେ ତୁମର ମର୍ଯ୍ୟାଦା ଏବଂ ମୋର ପ୍ରାଣରକ୍ଷା କରିଛନ୍ତି । ସେ ହିଁ ଆମର ଓ ସବଜୀବର ଭାଗ୍ୟବିଧାତା ଓ ଶରଣଦାତା । ସେହି ପ୍ରେମମୟ ପ୍ରଭୁଙ୍କର ଜୟ ହେଉ ।

ଗତ ରାତିର ବର୍ଷାସ୍ନାତ ବୃକ୍ଷଗୁଡ଼ିକ ଉପରେ ପ୍ରଭାତ-ସୂର୍ଯ୍ୟର ଆଲୋକ ଝଲମଲ କରୁଥିଲେ । ସ୍ୱାମୀ-ସ୍ତ୍ରୀ ଦୁ'ଜଣ ବୋଟ୍‌ଟି ଧରି ପୁନଶ୍ଚ ଚାଲିବାକୁ ଆରମ୍ଭ କଲେ । ସେମାନଙ୍କ ପଛରେ ଛଅୋଟି ମୃତଦେହ ଆକାଶକୁ ମୁହଁକରି ପଡ଼ିରହିଥିଲେ ।



# ମନର ମଣିଷ ପାଖକୁ ଚିଠି

ଏ ପୃଥିବୀରେ ପ୍ରାୟ ପ୍ରତ୍ୟେକ ବ୍ୟକ୍ତି କିଛି ନା କିଛି ଲେଖନ୍ତି । ପାଞ୍ଜିଆ ପାଞ୍ଜି ଲେଖେ, ହିସାବୀ ହିସାବ ଲେଖେ । ସମ୍ପାଦକ ସମ୍ପାଦକୀୟ ଲେଖନ୍ତି । ଡାକ୍ତର ଲେଖନ୍ତି ପ୍ରେସ୍‌କ୍ରିପ୍‌ସନ୍ । ଅଧ୍ୟାପକ ନୋଟ୍ ଲେଖନ୍ତି । ଛାତ୍ର ଲେଖନ୍ତି ପରୀକ୍ଷା ଖାତାରେ । ପୋଲିସ୍ ରିପୋର୍ଟ ଲେଖନ୍ତି ତ ଜଜ୍ ରାୟ ଲେଖନ୍ତି । କବି ଲେଖେ କବିତା । ଅକବି ଲେଖନ୍ତି ପାଠ୍ୟ ପୁସ୍ତକ । ଅଛନ୍ତି ଏମିତିଆ ଢେର୍ ଲୋକ ଏ ପୃଥିବୀରେ—ଯେଉଁମାନେ ଲେଖନ୍ତି କାନ୍ଥବାଡ଼ରେ । କେତେକ ଲେଖନ୍ତି ବିଜ୍ଞାପନ । କିରାଣି ବାପୁଡ଼ା ଫାଇଲ ଲେଖେ । କିଏ ଦଲିଲ ଲେଖେ ତ କିଏ ଲେଖେ ତମସୁକ । ବେକାର ବିଚରା ଦରଖାସ୍ତ ଲେଖେ । ଆଉ ଅଧିକାଂଶ ଲୋକ ଏସବୁ କିଛି ଲେଖୁନଥିଲେ ବି ଧୋବା-ଖାତାଟିରେ ନିଶ୍ଚୟ କିଛି ଲେଖୁଥିବେ । ମୋଟ ଉପରେ ଲେଖା ଅଭ୍ୟାସ ସମସ୍ତଙ୍କର କିଛି ନା କିଛି ଅଛି ।

କିନ୍ତୁ ଏ ଜଗତରେ ଯେତେ ପ୍ରକାର ଲେଖା ଅଛି, ଚିଠିଲେଖାଠାରୁ ମଧୁର ପରିଶ୍ରମ ଆଉ କେଉଁଥିରେ ନାହିଁ; ଅବଶ୍ୟ ଯଦି ଚିଠି ଲେଖିବାକୁ ମନର ମଣିଷଟିଏ ଆପଣଙ୍କର ଥାଏ ! ଆଉ ଉଭୟେ ଯଦି ରାତିରେ ଚିଠି ଲେଖି ଦିନରେ ତାକୁ ଡାକଘରେ ପକାନ୍ତି । ଦେଖନ୍ତୁ ଆଜ୍ଞା—ଚିଠି ଲେଖିବାଲାଗି ରାତିହିଁ ଉପଯୁକ୍ତ ସମୟ । ଦିନରେ ଆପଣ ବ୍ୟବସାୟିକ ଚିଠି ଲେଖନ୍ତୁ ଜୀବନବୀମା କଂପାନୀ ପାଖକୁ । ରାତିରେ ଆପଣ ଯେଉଁ ଚିଠି ଲେଖିବେ—ସେଥିରେ ରହିବ ମାୟାବିନୀ ନିଶାରାତିର ଗଭୀରତା-ନିବିଡ଼ତା-ରହସ୍ୟ—ଆଉ କାମନାର ନାତିଶୀତୋଷ୍ଣ ଆବେଗପୂର୍ଣ୍ଣ ସ୍ନିଗ୍ଧ ସ୍ପର୍ଶ ।

ଅବଶ୍ୟ ଅନେକ ଲୋକ ରାତିରେ ଚିଠି ଲେଖିଲେ ବି ସେମାନଙ୍କ ଚିଠିରେ କୌଣସି ଗଭୀରତା, ରହସ୍ୟ, ଅଥବା କାମନାର ନାତିଶୀତୋଷ୍ଣ ଆବେଗପୂର୍ଣ୍ଣ ସ୍ପର୍ଶ ମିଳେ ନାହିଁ । କାରଣ କଣ ଜାଣନ୍ତି ? ଏଇ ଧରଣର ଚିଠି ଯେଉଁମାନେ ଲେଖନ୍ତି—ସେମାନେ ଅତି-ମାତ୍ରାରେ ନିଜସଚେତନ ହୋଇ ଖିରୁଭଲ ବ୍ୟବହାର କରନ୍ତି । କାରଣ ଅଧରାତିରେ ଚିଠି ଲେଖୁ ଲେଖୁ ବି ସେମାନେ କଳ୍ପନାରେ ଦିନର ଆଲୁଅକୁ ଭୟକରି ସଙ୍କୁଚିତ ହୋଇଯାନ୍ତି । ସେମାନଙ୍କ ହୃଦୟ ଜାକିଜୁକି ହୋଇଯାଏ, ଫଳରେ ସେମାନଙ୍କର ରାତି-ଲେଖା ଚିଠିଟି ବି ଦିନର ଆଲୁଅ ପରି ଅତି ସ୍ପଷ୍ଟ ଓ ଅତି ଲଘୁ ହୋଇପଡ଼େ । ଏମାନେ ରାତିରେ ବି ଦିନର ସୂର୍ଯ୍ୟକୁ ମନେପକାଇ ତ୍ରସ୍ତ ହୋଇପଡ଼ନ୍ତି । ବେଡ୍‌ଲାମ୍ପ୍ ପାଖେ ସ୍ୱଳ୍ପ ଅନ୍ଧକାର ଘରେ ବସି ଚିଠି ଲେଖୁ ଲେଖୁ ସେମାନଙ୍କର ସନ୍ଦେହ ଓ ଭୟ ହୁଏ ଯେ—ଦିନର ସୂର୍ଯ୍ୟ କଲା

ପୋଷାକ ପିନ୍ଧି, ରାତିର ଅନ୍ଧକାର ଭିତରେ ଲୁଚି ଲୁଚି ଚାଲିକଣା କରି ତାଙ୍କର ଚିଠିଟିକୁ ଦେଖୁଚି କି ଅବା ! ଏ ଭଳି ଯେଉଁ ହତଭାଗା ଓ ହତଭାଗିନୀମାନଙ୍କର ହୁଏ, ସେମାନେ ଦିନର ପୋଷାକକୁ ମଧ୍ୟ ରାତିରେ ଟାଇଟ୍ କରି ପିନ୍ଧି ଶୁଅନ୍ତି । ରାତିରେ ଢିଲା ପୋଷାକ ଅକାରଣେ ଅଲଗୁଣୀରେ ଝୁଲୁଥାଏ । କିନ୍ତୁ ଉଚିତ ହେଉଛି ଦିନରେ ଟାଇଟ୍ ପୋଷାକ ପିନ୍ଧି ରାତିରେ ଢିଲା ପୋଷାକ ପିନ୍ଧିବା । ନିଜକୁ ଢିଲା କରିବାକୁ ରାତିଟାଇ ଠିକ୍ ବେଳା ! ରାତିରେ ଆପଣ ନିର୍ଭୟରେ ନିଜକୁ ଢିଲା କରନ୍ତୁ ।

ରାତିଟାର ଅବଶ୍ୟ ଭୟଙ୍କର ଗୁଣ ବି ଅଛି, ଦିନରେ ଆମେ ମଣିଷଙ୍କୁ ଡରୁ—କିନ୍ତୁ ରାତିରେ ଆମେ ଡରୁ ସେମାନଙ୍କର ଭୂତକୁ । କାରଣ ଏଇ ରାତିରେଇ ଆମ ମୁଣ୍ଡକୁ ଭୂତ ଚଢ଼େ—ଆଉ ଆମକୁ ଭୂତ ଗ୍ରାସେ । କିନ୍ତୁ ଏଇ ଭୂତ ଗ୍ରାସିବାଟା ବି କେଡ଼େ ମଜା ! ଯଦି ଭୂତପ୍ରତି ଆପଣଙ୍କର ଚରମ ଘୃଣା ନ ଥାଏ—ଯଦିଓ ପରଦିନ ସକାଳୁ ସୂର୍ଯ୍ୟର ନିଳିସ୍ତ ଆଲୁଅ ଆମ ମୁହଁକୁ ଲାଜରେ ରଙ୍ଗା କରିଦିଏ—ଗୁଆଁଙ୍କୁ ଗୁଆଁ ନିଜମାଡ଼େ—ଛି-ଛି, କି ଲଜ୍ଜା ସରମର କଥା ! କାଲି ରାତିରେ ପୁଣି ମୋ ଭଳି ଲୋକ ମୁଣ୍ଡକୁ ବି ଭୂତ ଚଢ଼ିଲା !! ମୋଭଳି ଲୋକକୁ ବି ଭୂତ ଗ୍ରାସିଲା !!

ମାତ୍ର ଦେଖନ୍ତୁ —ଏଭଳି ଲଜ୍ଜା ଅନ୍ୟ କାର୍ଯ୍ୟରେ ଓ ଅନ୍ୟ ପରିସ୍ଥିତିରେ ବି ସମ୍ଭବ । ମନର ମଣିଷ ପାଖରେ ରାତିର କେତୋଟି ଘଣ୍ଟା କାହିଁକି—କେତୋଟି ମୁହୂର୍ତ୍ତ ବି ବିପଜ୍ଜନକ । କାରଣ ଏଇ ଦୁର୍ବଳ ମୁହୂର୍ତ୍ତିଟିରେହିଁ ଆମ ମୁଣ୍ଡକୁ ଭୂତ ଚଢ଼ିଯାଇପାରେ ।

ମାତ୍ର ରାତିରେ ନିଜକୁ ଢିଲା କରି ମନର ମଣିଷ ପାଖକୁ କେବଳ ଚିଠି ଲେଖିଲେ—ଏଭଳି ଲଜ୍ଜାଲାଗି ଅବସର ରହିବନାହିଁ—ଯଦି ଆପଣ ମୋ କଥା ଠିକ୍ ରୂପେ ମାନନ୍ତି !

ଆପଣ ଅଧରାତିରେ ବିଛଣା ଉପରେ ମୁହଁମାଡ଼ି ଶୋଇ ଚିଠିଲେଖା ଆରମ୍ଭ କରନ୍ତୁ । ବିଛଣା ଉପରେ ଦୁଇଟି ଚମ୍ପା କିମ୍ବା ମଧୁମାଳତୀ ନହେଲେ ଗୋଟିଏ ହାସ୍ନାହେନା କିମ୍ବା ଦୁଇଟି ବିଣୋରି ଗୋଲାପ, କିଛି ନମିଳିଲେ କିଛି ସେଣ୍ଟ ବା ଅତର ବିଛଣାରେ ଛିଞ୍ଚିଦିଅନ୍ତୁ—ଯେଉଁ ସେଣ୍ଟ୍ ବା ଅତର ଆପଣ କେବେ ଥରେ ଶୁଙ୍ଘିଥିଲେ—ମନେନାହିଁ—କିନ୍ତୁ ବାସ୍ନାଟା ନାକକୁ ଚାଲିଯାଇଥିଲେ ବି—ମନରୁ ଉଡ଼ିଯାଇନାହିଁ ।

ଟେବୁଲ୍ ପାଖେ ବସି ଚିଠି ଲେଖନ୍ତୁ ନାହିଁ । କାରଣ ଟେବୁଲ୍ ଉପରେ ଏପରି ଅନେକ ଜିନିଷ ଥିବ—ଯାହାକି ପରିସ୍ଥିତିଟାକୁ ଏକ୍‌ବାରେ ମାଟି କରିଦେବ । ବିଶେଷତଃ ଜୀବନବୀମାର ପ୍ରିମିୟମ୍ ନୋଟିସ୍ ବା ଧୋବାଖାତାଟା ଯଦି ଟେବୁଲ ଉପରେ ପଡ଼ିଥିବାର ଆପଣ ଦେଖିନେଲେ—ତା'ହେଲେ କଥା ସରିଲା । ତା'ଛଡ଼ା ଟେବୁଲ୍ ପାଖେ ଚଉକିରେ ବସିଲେ ଆପଣଙ୍କ ଦେହଟା ଢିଲା ରହିବନାହିଁ, ଦେହସଙ୍ଗେ ମନର ସମ୍ପର୍କ ଖୁବ୍ ନିବିଡ଼—ଫଳରେ ମନଟା ମଧ୍ୟ ଢିଲାହବ ନାହିଁ । ଅତଏବ ବିଛଣାରେ ମୁହଁମାଡ଼ି ଶୋଇ—ଗୁଡିତଳେ ତକିଆଟିଏ ରଖି ମନର ମଣିଷ ପାଖକୁ ଚିଠି ଲେଖିବା ଭଲ ।

ଘରେ ବଜୁଳିବତି ଥିଲେ ନୀଳଆଲୋକ ଦିଅନ୍ତୁ । ନଥିଲେ ବେଡ୍‌ଲାମ୍ପଟିର ଆଲୋକ-ହିଁ ଯଥେଷ୍ଟ ଅନୁକୂଳ । ଅତିବେଶୀ ଆଲୋକ ଆପଣଙ୍କ ବୁଦ୍ଧିକୁ ପ୍ରଜ୍ୱଳିତ କରି ହୃଦୟକୁ ଅନ୍ଧକାର କରିଦେବ । ଏ କ୍ଷେତ୍ରରେ ସ୍ୱଳ୍ପ ଆଲୋକ ହିଁ ଉପଯୁକ୍ତ ପରିବେଶ ସୃଷ୍ଟି କରିଥାଏ ।

ନିଜକୁ ପାରୁପର୍ଯ୍ୟନ୍ତ ହୁଗୁଳାକରି ସେ ଚିଠି ଭିତରେ ପ୍ରକାଶ କରନ୍ତୁ । ଚିଠି ଲେଖିସାରି ଆଉ ଦ୍ୱିତୀୟ ଥର ପାଇଁ ପଢ଼ନ୍ତୁ ନାହିଁ । ସଙ୍ଗେ ସଙ୍ଗେ ଲଫାପାରେ ଭର୍ତ୍ତିକରି ଅଠା ଲଗାଇ ତକିଆ ତଳେ ଘୁଷାଇଦେଇ ଶୋଇପଡ଼ନ୍ତୁ । ଆଉ ସେ ଚିଠିକଥା ମନେପକାନ୍ତୁ ନାହିଁ । ପରଦିନ ସକାଳେ ଚିଠିଟିକୁ ନିଜେ ଯାଇ ଡାକଘରେ ପକାଇଦେଇ ଆସନ୍ତୁ । ଦେଖନ୍ତୁ—ସକାଳେ ଚିଠିଟିକୁ ଆଉ ଥରେ ପଢ଼ି ରାତିର ହୁଗୁଳାପଣ ଲାଗି ଲଜ୍ଜିତ ହେବାକୁ ଆଉ ଆପଣ ସୁଯୋଗ ପାଇଲେନାହିଁ ।

ହଁ—ଆଉ ଗୋଟିଏ କଥା । ରାତିରେ ଲେଖିସାରିବାପରେ ଯଦି ହଠାତ୍ ଆପଣଙ୍କର ମନେ ହେଲା ଯେ ନିଜକୁ ଅତି ହୁଗୁଳା କରି ପ୍ରକାଶ କରୁ କରୁ ଆପଣ ଆପଣଙ୍କର ମନର ମଣିଷଟି ପାଖରେ ନିଜ ହୃଦୟର ଦୁର୍ବଳତା ପ୍ରକାଶ କରିସାରିଛନ୍ତି—ତେବେ ଥାଉ, ଥାଉ । ଚିଠିଟିକୁ ବୋକାଭଳି ଚିରିପକାନ୍ତୁ ନାହିଁ । ବ୍ୟସ୍ତ ହୋଇ ତଳେ ଏତିକି ଲେଖିଦିଅନ୍ତୁ—

ବି:ଦ୍ର: —ଦେଖନ୍ତୁ ! ଏ ଚିଠିଟି ମୋର ହାର୍ଦ୍ଦିକ ବିଳାସ ମାତ୍ର । ଏ ଚିଠିରେ ହୃଦୟର ଦୁର୍ବଳତା ଯଦି ଦୈବାତ୍ କେଉଁଠି ରହିଯାଇଥାଏ—ତେବେ ସେ ମୋ ହୃଦୟର ଦୋଷ ନୁହେଁ—ଦୁର୍ବଳତାର ହିଁ ଦୋଷ ।

ବାସ୍—ସ୍ୱାପରେ ଆପଣ ଲଫାପାଟି ବନ୍ଦକରି ତକିଆ ତଳେ ଘୁଷି ଦେଇ ଶୁଅନ୍ତୁ ।

କେତେବେଳେ ଆପଣଙ୍କର ଚିଠିଟି ସଫଳ ଆଉ ସାର୍ଥକ ହୁଏ, ଆପଣ ଜାଣନ୍ତି ?

ଯେତେବେଳେ ଆପଣଙ୍କ ମନର ମଣିଷଟି ସେଥିରୁ କିଛି ବର୍ଣ୍ଣ ମାତ୍ର ବି ବୁଝି ନପାରନ୍ତି । ସେଇ ଚିଠିଟି ସାର୍ଥକ ଚିଠି—ଯାହାକୁ ପ୍ରେରକ ଚିନ୍ତା ନକରି ଲେଖିଥାଏ ଓ ପ୍ରାପକ ବୁଝି ନପାରି ଚିନ୍ତାକରେ ।

ଆଉ ସବୁଠାରୁ ଭଲକଥା ହେବ—ଯେତେବେଳେ ଆପଣଙ୍କ ମନର ମଣିଷଟି ଆପଣଙ୍କ ଚିଠି ପଢ଼ି କିଛି ବୁଝି ନପାରି—ଶେଷରେ ଚିଠିଟି ଆପଣଙ୍କ ନିକଟକୁ ଫେରାଇ ଦେଇ ଲେଖନ୍ତି ଯେ—"ଏଇଟି ବରଂ କୋଉ ପତ୍ରିକାରେ ଛପିଦିଅନ୍ତୁ । ଏଇଟା କଣ ଚିଠି—ନା—ଗୋଟାଏ ରମ୍ୟରଚନା ?"

ଏପରି କ୍ଷେତ୍ରରେ ଆପଣଙ୍କର କିଛି କ୍ଷତି ନାହିଁ । ଆଳୁ ଖୋଳୁ ଖୋଳୁ ଯଦି ମହାଦେବ ବାହାରିଲେ ତେବେ ଆଳୁଗୃହୀ ଦୁଃଖ କରିବା ଉଚିତ ନୁହେଁ ।

□□□

# ମନର ମଣିଷ ଓ ମଣିଷର ମନ

ମନର ମଣିଷ ପାଖକୁ କପଣ ଚିଠି ଲେଖିବାକୁ ହେବ, ସେକଥା ପଢ଼ି ଜଣେ ବନ୍ଧୁ କହିଲେ—"ମୂଳରୁ ମାଇପ ନାହିଁ—ପୁଅ ନାଆଁ ଗୋପାଳିଆ । ମନର ମଣିଷଟି ତୁମର ଆଗ କାହାନ୍ତି ? ଆଜିକାଲି ମନର ମଣିଷ ମିଳୁଛି ବା କୋଉଠି !!"

ବନ୍ଧୁ ଅବଶ୍ୟ ବାସ୍ତବ ପ୍ରଶ୍ନଟିଏ ଉଠାଇଲେ । କିନ୍ତୁ ଯାହାର ମାଇପ ନାହିଁ—ସେଇ କେବଳ ଆଣ୍ଠୁଆଗୋପାଳଙ୍କ ପାଖରେ ଅଧା ପଡ଼େ । ଆଉ ଯାହାର ମାଇପ ଅଛି—ସେ ତ କେବଳ ମାଇପ ପାଖରେ ହିଁ ଆଣ୍ଠୁମାଡ଼ି ବସିବ ଦିନରାତି । ତେଣୁ ମାଇପ ଯାହାର ଲୋଡ଼ା—ସେ ଆଗ ପୁଅ ନାଁ ଆଡ଼ୁ ଖୋଜିବା ଆରମ୍ଭ କରେ । "ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା" ଅର୍ଥ ଆଉ କଣ ? "ମନର ମଣିଷ" ଯା'ର ଦରକାର—ସେ ଆଗ ଚିଠି ଲେଖାଆଡ଼ୁ ତା'ର ଅନୁସନ୍ଧାନ ଆରମ୍ଭ କରିଦିଏ ।

ବନ୍ଧୁ ଜଣକ ଜନଗଣନା ଅଫିସରେ କାମ କରୁଥିଲେ । ସେ କହିଲେ—୧୯୪୮ଠାରୁ ୧୯୭୮ ଭିତରେ ଆମ ଦେଶ ଜଙ୍ଗଲର ବାଘ ଅପେକ୍ଷା—ପୋଖରୀର ମାଛ ଅପେକ୍ଷା—ନର୍ଦ୍ଦମାର ମାଛି ଅପେକ୍ଷା—ଆଉ ଗୁହାଳର ଗୋରୁଗାଈ ଛେଳି ମେଣ୍ଢାଙ୍କ ଅପେକ୍ଷା, ମଣିଷ ହିଁ ବଢ଼ିଛନ୍ତି ବେଶୀ । ମଣିଷ ବଢ଼ିଛନ୍ତି—ମାତ୍ର ଦୁର୍ଭାଗ୍ୟର କଥା—ମନର ମଣିଷଟିଏ ମିଳୁନାହିଁ—ଯାହା ପାଖେ ଘଡ଼ିଏ ନିଜର ଦୁଃଖ-ସୁଖ କହିହେବ । ଯାହା ପାଖକୁ ଭରସରେ ମନ ଖୋଲି ଚିଠିଟିଏ ଲେଖିହେବ ।

କେବଳ ମୋର ବନ୍ଧୁ ଜଣକ ନୁହଁ—ବର୍ତ୍ତମାନ ପୃଥିବୀରେ ବହୁ ଚିନ୍ତାଶୀଳ କବି, ଦାର୍ଶନିକ ମଧ୍ୟ ଚିତ୍କାର ଛାଡ଼ିଲେଣି—"ମନର ମଣିଷ କାହିଁ ? ମୋର ମନର-ମଣିଷ କାହିଁ ?" ପୃଥିବୀର ପ୍ରତ୍ୟେକ ବ୍ୟକ୍ତି ଯେମିତି ଆଜି ଅତି ଅସହାୟ ଭାବରେ ଏକୁଟିଆବାହାବା ହୋଇଯାଇଛି । ଘୃଣାଆଡ଼ୁ ହତାଶା, ବ୍ୟର୍ଥତା ଆଉ ନିଃସଙ୍ଗତା ତା'ଉପରେ ଅଜାଡ଼ି ହୋଇପଡ଼ୁଛି ।

ସତକଥା । ରାସ୍ତାରେ, ହୋଟେଲରେ, ବସ୍‌ରେ, ଟ୍ରେନ୍‌ରେ, ଅଫିସରେ, କଲେଜରେ, ହାଟଘାଟରେ ମଣିଷ ହାଉଜାଉ—ମାତ୍ର 'ମନର ମଣିଷ' କାହାନ୍ତି ?

ଅବଶ୍ୟ ସମସ୍ତେ ଏଇ 'ମନର ମଣିଷ'କୁ ଖୋଜୁନାହାନ୍ତି । ମାଇପ ଯେଉଁମାନଙ୍କର ଅଛି—ସେମାନେ ପୁଅ ନାଁ 'ଅନାମ' ଦେଇ ମଧ୍ୟ ନିଶ୍ଚିନ୍ତ । କେବଳ ମାଇପ ନଥିବା-ବାଲାମାନେ—'ପୁଅ ନାଁ କଣ ହେବ' ସେଥିଲାଗି ଚିନ୍ତିତ—ବ୍ୟାକୁଳ ।

ଆଜିକାଲି ଆମ ଦେଶରେ ଦଳେ ଲୋକ ବେଶ୍ ନିଶ୍ଚିନ୍ତ । ଏଇ ଧରନ୍ତୁ—ଦୋକାନୀମାନେ । ସେମାନଙ୍କର ମନର ମଣିଷ ଗରାଖ । ସେମାନେ ତାହା ପାଇଛନ୍ତି । ରାଜନୀତି-ବ୍ୟବସାୟୀମାନଙ୍କର ମନର ମଣିଷ 'ଭୋଟର' । ପଇସା ବାଣ୍ଟିଲେ ସେମାନେ ଦୁଷ୍ପ୍ରାପ୍ୟ ନୁହନ୍ତି । ଇଂଜିନିଅରମାନଙ୍କର ତ କଣ୍ଟ୍ରାକ୍‌ଟର ଅଛନ୍ତି । ପୋଲିସର ମନର ମଣିଷ—'ଚୋର' । ସେମାନେ ବା ଏ ଦେଶରେ କୋଉ ଅଭାବ ? ଏ ଦୁନିଆଁ (ଦେଶ) ମେ ସବ୍ ଚୋର୍ ଚୋର୍—ହୈ—କୋଇ ଛୋଟ୍‌ଟା ଚୋର—କୋଇ ବଡ଼୍‌ଡ଼ା ଚୋର ! ଡାକ୍ତରଙ୍କର ମନର ମଣିଷ—'ରୋଗୀ'—ତାଙ୍କର ବି ଏ ଦେଶରେ ଅଭାବ ନାହିଁ । ଓକିଲଙ୍କର ମନର ମଣିଷ ମକ୍‌କେଲ । ସେମାନଙ୍କ ସଂଖ୍ୟା ତ ଓକିଲଙ୍କୁ ବଳି ପଡ଼ିଲାଣି । ସେଲ୍‌ଟାକ୍ସବାଲାଏ ଦୋକାନୀମାନଙ୍କୁ 'ମନର ମଣିଷ' ବୋଲି ଧରି-ନେଇଛନ୍ତି ।

ମାତ୍ର ଏଇ ଲୋକମାନଙ୍କ ଲାଗି ଆମେ ଏ ରଚନାଟି ଲେଖୁନାହୁଁ । କାରଣ ଏମାନଙ୍କ ଜୀବନରେ ରାତି ନାହିଁ । ଏମାନଙ୍କର ଦିନରାତି ସମାନ । ରାତିରେ ବି ଏମାନେ ଦିନର କାମ ସୁରୁଖୁରୁରେ କରନ୍ତି । ଆଉ—କିଛି କାମ ନଥିଲେ—ରାତିରେ ଏମାନଙ୍କୁ ସୁନ୍ଦର ନିଦ ହୋଇଯାଏ । ଏମାନେ ଆମର ନମସ୍ୟ ହୋଇପାରନ୍ତି । ମାତ୍ର 'ମନର ମଣିଷ'ର ସୂକ୍ଷ୍ମ ପରିଚୟ ଏମାନଙ୍କୁ ଦେବାରେ କିଛି ଲାଭ ନାହିଁ ।

ଯେଉଁମାନଙ୍କୁ ବହୁତ ରାତିଯାଏ ନିଦ ହୁଏ ନାହିଁ—ଅଥଚ ରାତିରେ ସେମାନେ ଦିନର କାମ କରିପାରନ୍ତି ନାହିଁ—ସେଇ ହତଭାଗ୍ୟଗଣ କେବଳ ପ୍ରକୃତରେ ମନର ମଣିଷ ଲାଗି ବାତୁଳ; ଅବଶ୍ୟ ଆଉ କିଛି ଲାଗି ନୁହେଁ—କେବଳ ମନ ଖୋଲି ଗପଟିଏ ଲେଖିବାକୁ । 'ଆଉ କିଛି' ଲାଗି ପରର ମଣିଷ ଅଛନ୍ତି । କିନ୍ତୁ 'ମନର ମଣିଷ' ଲାଗି କାମନାଟି ଏକ ନିଷ୍କାମ-କାମନା । ନିର୍ଦ୍ଦୋଷ କାମନା ! ( ଗପ ଲେଖିବାଟା କଣ କାମରେ ଯାଏ ? ନା—ଛତୁ-ତିଅଣ ଆଇଟମ୍‌ରେ ଯାଏ ? )

ଏ କଥା ଶୁଣି ଡାକ୍ତର ଅବଶ୍ୟ କହିବେ ଯେ—ଯାହାକୁ ରାତିରେ ଭଲ ନିଦ ହେଉନାହିଁ—ତାର ମନର ମଣିଷ ହେବା ଉଚିତ ଜଣେ ଭଲ ଡାକ୍ତର । ଅବଶ୍ୟ ସବୁ ଡାକ୍ତର ନିଜକୁ ଭଲ ଡାକ୍ତର ବୋଲି ଭାବନ୍ତି—( କେବଳ ନିଜର ସ୍ତ୍ରୀ ବା ପୁତ୍ର କନ୍ୟା ବେରାମ ହେଲେ ଅଲଗା କଥା ! କାରଣ ଆମ ଦେଶରେ ଡାକ୍ତର ତ ରୋଗକୁ ଔଷଧ ଦିଅନ୍ତି ନାହିଁ—ରୋଗୀକୁ ଔଷଧ ଦିଅନ୍ତି । ଫଳରେ ରୋଗ ମରେନାହିଁ—ରୋଗୀ ମରେ । କିମ୍ବା ରୋଗୀ ମଲେ ଯାଇ ରୋଗ ମରେ । ) ଛାଡ଼ନ୍ତୁ । ଡାକ୍ତର ପକ୍ଷରେ ରୋଗୀ ବା ରୋଗୀ ପକ୍ଷରେ ଡାକ୍ତର—କେବେ ମନର ମଣିଷ ହୋଇପାରିବେ ନାହିଁ । ବ୍ରୋମାଇଡ୍ ଖାଇଲେ ରୋଗୀକୁ ଭଲ ନିଦ ହେବ । ଫିସ୍ ପାଇଲେ ଡାକ୍ତର ବି ଆରାମରେ ଶୋଇବେ ।

ବର୍ତ୍ତମାନ ବାସ୍ତବ କ୍ଷେତ୍ରରେ ଏହି ମନର ମଣିଷଙ୍କ ପରିଚୟ ପାଇବାକୁ ଚେଷ୍ଟା କରାଯାଉ । ଆପଣ ଆଗ ନିଜକୁ ପଚାରନ୍ତୁ—ଆପଣଙ୍କର 'ମନ' ଅଛି ନା ନାହିଁ—'ମନ'

ଥିଲେ କେବଳ 'ଉପାସ୍ୟ' ବଲେ ବଲେ ଆସେନାହିଁ । ମନର ମଣିଷ ବି ବଲେବଲେ ମିଳିଯାଏ । ଆଖି ଥିଲେ—ଆଖି ଭିତରେ ପୁଅ ଯେମିତି ଅଛି—ମନ ଥିଲେ ମନ ଭିତରେ ମନର ମଣିଷ ବି ସେମିତି ଅଛି । ଆପଣଙ୍କ ଘରକୁ ଆଦର ରହିଛି—ଘରର ମଣିଷ । ଆଉ ମନକୁ ଆଦର ରହିଛି—ମନର ମଣିଷ । ଅବଶ୍ୟ ଘରରମଣିଷ ଲାଗି ମନର କବାଟଟା ବନ୍ଦ ନୁହେଁ । କିନ୍ତୁ ଘରର କବାଟଟାକୁ 'ମନର ମଣିଷ' ଲାଗି ଆଦୌ ଖୋଲନ୍ତୁ ନାହିଁ । ଆମ ଭଳି ସାଧାରଣ ଲୋକଙ୍କର ସାଧାରଣ ପ୍ରକୃତି ହେଉଛି—ମନର ମଣିଷ ଜଣକ ଯଦି ଦୈବାତ୍ କେବେ ଆମ ଘର ଭିତରକୁ ପଶିଲେ—ଆମେ ସଙ୍ଗେ ସଙ୍ଗେ ଘରର କବାଟ ଝିଙ୍କା ବନ୍ଦ କରି, ତା ସଙ୍ଗେ ଘରରମଣିଷ ଭଳି ବ୍ୟବହାର କରୁ କରୁ ତାକୁ ଶେଷରେ ଘରରମଣିଷରେ ପରିଣତ କରିଦେଉ । ଫଳରେ ସେ ଆଉ ଆମ ମନ ଭିତରକୁ ଯାଇ ପାରିବନାହିଁ । ( 'ମନର ମଣିଷ' ନିଜେ ମଧ୍ୟ ଥରେ ଆପଣଙ୍କ ଘର ଭିତରକୁ ପଶିଲେ— ଆଉ 'ମନ' ଭିତରକୁ ଯିବାକୁ ସହଜରେ ରାଜିହୁଏନାହିଁ । )

'ମଣିଷର ମନ' ଓ 'ମନର ମଣିଷ' ପରସ୍ପର ସମ୍ପୃକ୍ତ । ପୁରାଣରେ ମାନସପୁତ୍ର ଆଉ ମାନସୀକନ୍ୟାମାନଙ୍କ କଥା ଶୁଣିଥାଉ । ଦେବତାମାନେ ମନ ଭିତରୁ ପୁତ୍ରକନ୍ୟା ଜାତକରି ତାଙ୍କୁ ସଂସାରରେ ଲୀଳା କରିବାକୁ ଛାଡ଼ିଦିଅନ୍ତି । ଖାଲି ଦେବତା ନୁହନ୍ତି—ଆମେ ମଧ୍ୟ ଆମ ମନ ଭିତରୁ ମନର ମଣିଷଙ୍କୁ ସୃଷ୍ଟି କରୁ । ମନ ଯାହାର ନାହିଁ—ତାର ମନର ମଣିଷ ବି ନାହିଁ । ଆଧୁନିକ ବୈଜ୍ଞାନିକମାନେ କହନ୍ତି—'ମନ' ବୋଲି ଏକ ନିର୍ଦ୍ଦିଷ୍ଟ ଦୃଶ୍ୟମାନ ପଦାର୍ଥ ଆମ ଦେହ ମଧ୍ୟରେ ନିର୍ଦ୍ଦିଷ୍ଟ ସ୍ଥାନରେ ନିର୍ଦ୍ଦିଷ୍ଟ ଆକାରରେ କେଉଁଠି ସଂରକ୍ଷିତହୋଇ ରହିନାହିଁ; ଅଥଚ 'ମନ'କୁ ସ୍ୱୀକାର କରି ଆମେ ମନୁ-ପୁତ୍ରମାନେ ସଂସାରରେ ବଂଚୁଛୁ ଓ ସଂସାରକୁ ବି ବଂଚାଉଛୁ ।

ସେମିତି ହୁଏତ 'ମନର ମଣିଷ' ବୋଲି ବାସ୍ତବରେ କୌଣସି ନିର୍ଦ୍ଦିଷ୍ଟ ବ୍ୟକ୍ତି କେଉଁଠି ନାହିଁ; ଅଥଚ—'ମନର ମଣିଷ' ପାଖକୁ ଚମତ୍କାର ଚିଠି ଲେଖିବାକୁ ହୁଏ—ଆଉ 'ମନର ମଣିଷ'କୁ ନେଇ ଚମତ୍କାର କାବ୍ୟ-କବିତା ବି ସୃଷ୍ଟି କରାଯାଇଥାଏ । ୧୯୩୪ ମସିହାରେ ଯେ ଥିଲା ଆପଣଙ୍କର 'ମନର ମଣିଷ'—୧୯୪୪ ବେଳକୁ ସେ ଆଉ ଆପଣଙ୍କ ମନରେ ନାହିଁ । ୧୯୫୫ର ମନର ମଣିଷ ହୁଏତ ୧୯୬୮ ଡିସେମ୍ବରରେ ଆପଣଙ୍କ ଘରର ମଣିଷ ହୋଇସାରିଛି ବା ୧୯୭୮ ବେଳକୁ ଆପଣଙ୍କ ବଂଧୁପରେ ଧୋବା ହିସାବ ଖାତା ଲେଖୁଛି ।

ଅଧିକାଂଶ ମନୁଆଁ ଲୋକହିଁ ମନ ଭିତରେ ମନର ମଣିଷ ଲାଗି ବିରହବ୍ୟାକୁଳ । ମାତ୍ର ତାଙ୍କୁ ସଫା ପଚାରନ୍ତୁ—'କିଏ' ଆପଣଙ୍କର ମନର ମଣିଷଟି ? ସେ କିନ୍ତୁ କହିପାରିବେ ନାହିଁ; ଅଥଚ ୧୯୩୪ ମସିହାଠାରୁ ୧୯୭୮ ମସିହା ପର୍ଯ୍ୟନ୍ତ ବହୁ ମଣିଷଙ୍କୁ ସେ ବହୁବାର 'ମନର ମଣିଷ' ବୋଲି ଭ୍ରମ କରି ଆସିଛନ୍ତି । ମତେ ପଚାରିଲେ ମଧ୍ୟ ମୁଁ କହି-ପାରିବି ନାହିଁ—'ମନର ମଣିଷ'ଟି ପ୍ରକୃତରେ କିଏ ?? ହେଲେ—ସେଦିନ ମାଇସଞ୍ଜବେଳେ

ଠାକୁର ଅଗଣାରେ ବଉଳଗଛ ମୂଳେ ଯାହା ସଙ୍ଗେ ଦେଖାହୋଇଥିଲ ? ଆପଣ ହୁଏତ ତାକୁ ବଉଳଫୁଲ ଯାଚିଥିବେ, ଆଉ ଗେଲେଇ ହୋଇ ଗାଇଥିବେ କବିତା—

ଆଜି ଏ ସଞ୍ଜେ
ତୋ ମନ କୁଂଜେ
କୋଇଲି ଡାକଇ 'କୁହୁ'
(ଏଇ) ଝୁରିବଉଳର
ସଉରଭେ ମୋର—
ମଉନ ବେଦନା ରହୁ ।

କିମ୍ବା ସେ ହୁଏ ତ କହୁଥିବ—"ଅମୁକବାଇ ଫୁଲ କଣ ହେବ ? ମୋତେ ଦ'ଟା ପାଚିଲା ବଉଳକୋଳି ତୋଳିଦିଅନା, ଖାଇବି ।"—କହୁ ପଛେ !! ସେ ଦିନ ନଈକୂଳେ ବସି—ବଂଶୀରେ ଝିଟିଆଖି ରାଗ ଆଳାପ କରୁ କରୁ—କଳସୀ କାଖେ ଧରି—ଆସିଥିଲା ଯେ ଗୋଟି—ସେଇ—ସେଇ ଜଣକ—ଯାହା ସଙ୍ଗେ ଟିକେ ଚୁପ୍‌ଚୁପ୍ ହସର ବିନିମୟ—ଆଉ ଟିକିଏ ସରମ ଚାହାଣିର ନରମ ବିନିମୟ—ସେ କଣ ଆପଣଙ୍କ ମନର ମଣିଷ ? କିମ୍ବା ସମୁଦ୍ରକୂଳେ ହାତ ଧରାଧରି ହୋଇ ବୁଲୁ ବୁଲୁ ସେ ଦିନ ଯାହା ସଙ୍ଗେ ସମୁଦ୍ର କଂକଡ଼ା ଦେଖି ଅଧ-ମାଇଲଏ ବାଲି ଉପରେ କଙ୍କଡ଼ା ପଛରେ ଦଉଡ଼ା ହୋଇଥିଲ ?? ଆଚ୍ଛା—ସେ ଦିନ ହୋଟେଲରେ ବସି ଯାହା ସଙ୍ଗେ କଫି ପିଉ ପିଉ ଆଧୁନିକ କବିତାର ଦୁର୍ବୋଧତା ଉପରେ ଆଲୋଚନା ହୋଇଥିଲ ? କିମ୍ବା—ସେକେଣ୍ଡ ସୋ ସିନେମାରେ ଯାହା ସଙ୍ଗେ ବକ୍‌ସରେ ବସି ଇଂରାଜୀ ଚଳଚିତ୍ର ରୋମିଓ ଜୁଲିଏଟ୍ ଦେଖାହୋଇଥିଲ ? ମାଛଗାଡ଼ିରେ ନିର୍ଘଞ୍ଚିଆ ଫାଷ୍ଟକ୍ଲାସରେ ଦୈବାତ୍ ଯାହା ସଙ୍ଗେ ଅଶୀ ମାଇଲ ରାତି ଭ୍ରମଣ କରିବାକୁ ଯୋଗ ପଡ଼ିଥିଲା ? ଡାକ୍ତରଖାନାରେ ଯେଉଁ ଶୁ ଭ୍ରବସନାଟି ପ୍ରତି ତିନି ଘଣ୍ଟାରେ ଥରେ ଆପଣଙ୍କ ବାହୁରେ ପ୍ରତିଯାକ ପେନ୍‌ସିଲିନ୍ ଫୋଡ଼ୁଥିଲା ? ଆଉ ସେଇ ସେ—ସେଇ କଲେଜ ଜୀବନରେ—ସେଇ ଯେ କ୍ଲାସର ଆଗ ବେଞ୍ଚରେ ବସୁଥିଲା—ତଳକୁ ମୁହଁ ପୋତି ? ମୁରୁକି ମୁରୁକି ହସି, ନଖ କାମୁଡ଼ି କଣେଇ କଣେଇ କଟାକ୍ଷ ହାଣୁଥିଲା ? ଆଉ କଲେଜରେ ପ୍ରତିଦିନ ପ୍ରଥମଥର ଦେଖାହେଲାମାତ୍ରେ ଯେ ଲୀଳାୟିତ ଭଙ୍ଗୀରେ ଆଗରୁ ସଲଜ୍ଜ ନରମ ନମସ୍କାରଟିଏ ଜଣାଇ ତା ଆଡ଼୍ ସମ୍ଭାଷଣର ଓର ଖୋଜୁଥିଲା ? କିମ୍ବା ସେ ଜଣକ ଯେ, ମାସିକ ପତ୍ରିକାରେ ଆପଣଙ୍କ ପ୍ରକାଶିତ ଗୋଟିଏ କବିତାର ଅସଲ ମଂଜଧାଡ଼ିକେଇଟି ଆପଙ୍କ ଆଗରେ ଗାଇ ପ୍ରଶଂସମାନ ବିମୁଗ୍‌ଧ ଆଖିରେ ଚାହିଁ ଚାହିଁ ଆପଣଙ୍କୁ ବିମୂଢ଼ କରିଦେଇଥିଲା ? କୁହନ୍ତୁ ତ କିଏ ? ମୋ ରାଣ—କୁହନ୍ତୁ । ସ୍ବାଙ୍କ ମଧ୍ୟରୁ ପ୍ରକୃତରେ କିଏ ହୋଇଥିବ ଆପଣଙ୍କ ମନର ମଣିଷଟି ?

ଫୁଃ ଫୁଃ—ପାରିବେନି । ଆପଣ ପାରିବେନି ଆପଣେ ଆପଣଙ୍କ ମନର ମଣିଷଟିକୁ ଠିକ୍ ଭାବେ ଚିହ୍ନାଇଦେଇ ପାରିବେନାହିଁ ।

ଘର ମଣିଷଙ୍କୁ ଚିହ୍ନାଇ ଦେବାଲାଗି ପୁଅ ଝିଅ ଅଛନ୍ତି । ଗୋପାଳିଆ ମା'କୁ ଗୋପାଳିଆ ବାପା ଚିହ୍ନେ । ଆଉ ଗୋପାଳିଆ ବାପାକୁ ବି ଗୋପାଳିଆ ମାଆ ବେଶ୍ ଚିହ୍ନିଛି (ପୁଅ ଝିଅ ନଥିଲେ—ପୁରୁଣା ଝିଅଙ୍କ ତ ଥିବେ !) କିନ୍ତୁ ମନର ମଣିଷଟିକୁ ? ହାୟ, ହାୟ ! କିଏ ତାକୁ ଚିହ୍ନାଇଦେବ ? ନିଜର ମନ ଯାହାକୁ ଚିହ୍ନିନାହିଁ—ତାକୁ ଆଉ ଚିହ୍ନିବ କିଏ ? ଚିହ୍ନାଇବ ବା କିଏ ?

କିନ୍ତୁ ଚିହ୍ନିନପାରିଲେ ବା ଚିହ୍ନାଇ ନପାରିଲେ ବି, ସେ ଅଛି । ସେ ଯେ ହେଉ—ମନର ମଣିଷକୁ ଈଶ୍ୱର ସୃଷ୍ଟି କରିନାହାନ୍ତି । ଆମର ମନ ହିଁ ତାର ସ୍ରଷ୍ଟା । ସେ ମନସିଜ ବା ମନସିଜା । ବଉଳ ଗଛ ତଳେର—ନଈ ସମୁଦ୍ର କୂଳର—ଡାକ୍ତରଖାନାର—ଟ୍ରେନ୍ ଭିତରର—ଯେ ଯେ କେହି ହେଉ ପଛେ—ତା' ସହିତ ମନ ସଂଯୋଗ କରିବାକୁ ପଡ଼ିବ । ତାକୁ ବିଧାତା ଗଢ଼ିଛି ମଣିଷ କରି । କିନ୍ତୁ ଆପଣଙ୍କ ମନ ତାକୁ ମନର ମଣିଷ ରୂପେ ଗଢ଼ିବ । ରବି ଠାକୁରଙ୍କ କଥାରେ—ଆପଣା ମନର ମାଧୁରୀ ମିଶାଇ ତାକୁ ମଧୁର କରି ଗଢ଼ିବାକୁ ହେବ । ନିଜ ମନର ସମସ୍ତ ଅନୁଭୂତ—ସମ୍ବେଦନ—ସମସ୍ତ ରମ୍ୟାଦର୍ଶ—ସମସ୍ତ ରମ୍ୟ ଆକାଂକ୍ଷା—ସମସ୍ତ ସୂକ୍ଷ୍ମ ସୁକୁମାର କାମନା—ସମସ୍ତ ଆନନ୍ଦ ଓ ସମସ୍ତ ବେଦନା ଦେଇ ତାକୁ ଆପଣ ଗଢ଼ିବେ । ଆପଣଙ୍କ ମାନସ ରାଜ୍ୟର ସମସ୍ତ ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ ଓ ଶକ୍ତି ବଳାସନେ ସେ ହେବ ଅଧିଷ୍ଠାତ୍ରୀ ଦେବୀ । ଆପଣଙ୍କ ମୂର୍ଦ୍ଧାଦେଶର କାରୁଣ୍ୟସାଗରରେ ପ୍ରସ୍ଫୁଟିତ ସହସ୍ର ଦଳ ପଦ୍ମ ମଧ୍ୟରେ ସେ ହେବ ନିର୍ବାକ୍ ବାକ୍‌ଦେବୀ । ଅଥଚ ସେଇ ମୂକ ମୂର୍ତ୍ତିର ପ୍ରସାଦରେ ବା ବରରେ ଆପଣଙ୍କର ବାକ୍‌ସ୍ଫୂର୍ତ୍ତି ହୋଇ ଆପଣ ହୋଇଉଠିବେ ବାଗ୍ମୀ । ଆଉ—ଆପଣଙ୍କର ବାକ୍‌ମୁଖରତା ସ୍ୱତଃ ପ୍ରକାଶିତ ହେବ—ଆପଣଙ୍କର କାବ୍ୟ-ମୁଖରତାରେ । ସେ ନିଜେ ମୂକ ହୋଇ ଆପଣଙ୍କୁ ବାଗ୍ମୀ କରିବ । ଆପଣଙ୍କ ମନ ଭିତରେ ପଙ୍ଗୁ ଭଳି ସେ ରହିବ ସ୍ଥିର ହୋଇ—କିନ୍ତୁ ତା'ର ପ୍ରସାଦରେ ଆପଣ ଲଙ୍ଘନ କରିବାକୁ ସମର୍ଥ ହେବେ ମହାଗିରି—ମହାରଣ୍ୟ !

ଏଇଠି ବନ୍ଧୁ ଜଣକ ପଚାରିଲେ—ଆଚ୍ଛା ! ତୁମର ମନର ମଣିଷ ତୁମର ମନକୁ ଭଲ ବୁଝିପାରେ ?

ମୁଁ କହିଲି—

ଦେଖ ! ମାତୃଗର୍ଭରେ ଜାତ ଶିଶୁ କ'ଣ ମାତୃଗର୍ଭକୁ ବୁଝିପାରେ ? ମନର ମଣିଷ ମନରୁ ସୃଷ୍ଟି ହୁଏ—କିନ୍ତୁ ମନକୁ ବୁଝିବା ତା'ର ସାଧ୍ୟାତୀତ । ଆଉ ମଧ—

ମଧୁପର ଗୁଂଜନକୁ କଣ ବୁଝିପାରେ ରକ୍ତକମଳ ? ମଧୁପ ବି କଣ ବୁଝିପାରେ ତାର ଗୁଂଜନର ବ୍ୟର୍ଥତା ରକ୍ତକମଳ ପାଖରେ ? ହାୟ ! ଉଭୟେ ଯଦି ଉଭୟଙ୍କ କଥା ବୁଝି-ପାରୁଥାନ୍ତେ, ତେବେ ସଂସାରରେ ଏତେ ବେଦନାର ଗୁଂଜନ ଅଥବା କୂଜନ, ଏତେ ଉନ୍ମତ୍ତ କଳରବ, ଏତେ ଉତ୍ତେଜିତ ଭାଷା, ଏତେ ଆବେଗକ୍ଷିପ୍ତ ଛନ୍ଦ, ଏତେ ହୃଦସ୍ପନ୍ଦିତ ସୁର,

ଏବେ ବଙ୍ଗାଦର ମୂର୍ଚ୍ଛନା ଆଉ ଶୁଣାଯାଉ ନା ? ନ ବୁଝି ପାରିବାଟା ହିଁ ଏ କ୍ଷେତ୍ରରେ କାବ୍ୟସୃଷ୍ଟି ଲାଗି ବେଶି ଅନୁକୂଳ । 'କାବ୍ୟ' ଶବ୍ଦଟିକୁ ଆପଣ ସିଙ୍ଗର୍ ମେସିନ୍‌ରେ ସିଲାଇ କରିବାଠାରୁ ଆରମ୍ଭ କରି ଇଂଲଣ୍ଡ ପ୍ରଣାଳୀ ପଢ଼ିବା ପର୍ଯ୍ୟନ୍ତ—ସବୁପ୍ରକାର ଆବେଗପୂର୍ଣ୍ଣ କର୍ମ, ସୁକର୍ମ, ବିକର୍ମ, କୁକର୍ମ ଅର୍ଥରେ ମଧ୍ୟ ଗ୍ରହଣ କରିପାରନ୍ତି ।

ବନ୍ଧୁ ଜଣକ ପୁଣି ପଚାରିଲେ—

ଅଚ୍ଛା—ମନର ମଣିଷ 'ସ୍ୱକୀୟା' ହେଲେ ଭଲ—ନା 'ପରକୀୟା' ହେଲେ ଭଲ ?

ମୁଁ କହିଲି—

'ସ୍ୱକୀୟା' 'ପରକୀୟା' ଶବ୍ଦ ବୈଷ୍ଣବ-ଭାବ-ଦର୍ଶନର ଦୁଇଟି ପାରିଭାଷିକ ଶବ୍ଦ । ଏ ଶବ୍ଦ ଯୁଗଳଦ୍ୱାରା ସେମାନେ କଣ ବୁଝନ୍ତି କେଜାଣି—କିନ୍ତୁ 'ମନର ମଣିଷ'ଟି ସବୁବେଳେ ପରକୀୟା । ମୋର ଧାରଣା—ଘରର ଖାଇ ପରର ଗାଇବା ହିଁ ପରକୀୟା । ଆଉ ପରର ଖାଇ ଘରର ଗାଇବାଟା ସ୍ୱକୀୟା । କହିବାରେ ଦ୍ୱିଧା ନାହିଁ ଯେ—'ଘରର ମଣିଷ' କବିକୁ ବଞ୍ଚାଏ । ମାତ୍ର କବିତାକୁ ବଞ୍ଚାଏ 'ମନର ମଣିଷ' ।

ଏତିକି କହୁଛି—ଘରଣୀ ଘର ଭିତରୁ ସାପପରି ଫଁସ୍‌କିନା ବାହାରିଆସି ଫଅଁକିନା ଭୂଇଁ ଉପରେ ଗୋଇଠିମାରି କହିଲେ—ଲାଜ ମାଡ଼ୁନି ? ଫେର୍ ଏକଥା କହୁଛ ? ଘରର ମଣିଷ ଖାଲି କବିକୁ ବଞ୍ଚାଏ—କବିତାକୁ ବଞ୍ଚାଏ ନାହିଁ ? ତୁମ କବିତା ଖାତାକୁ ସେଦିନ ସାନଝିଅ ନେଇ ଚୂଲିରେ ଭରତି କରୁଥିଲା—କିଏ ସେ ଖାତାକୁ ତା' ହାତରୁ ଛଡ଼େଇ ଆଣି ତୁମ ଟେବୁଲ ଉପରେ ସଜେଇ କରି ରଖିଲା ? ତୁମର ସେଇ ପୁରୁଣା ଗପଖାତାଟାକୁ କିଏ ବଡ଼ଝିଅଙ୍କ ମୁହଁରୁ ଛଡ଼େଇଆଣି ଆଲ୍‌ମିରାରେ ଝାଡ଼ିଝୁଡ଼ି ରଖିଛି ? କିଏ ତା'ର ଗହଣା ବିକି ତୁମର ସେଇ କବିତାବହିଟାକୁ ଛପେଇଛି ? ତୁମେ ଲେଖୁଥିଲାବେଳେ କିଏ ତୁମ କଲମରେ କାଳି ଭର୍ତ୍ତି କରିଦିଏ ? ତୁମେ ଲେଖିଲାବେଳେ କିଏ ତୁମ ପାଖରେ ପାନ ଖଞ୍ଜିଦିଏ ? ରାତି ଦୁଇଟାଯାଏ ଅନିଦ୍ରା ହୋଇ ତୁମେ ଉପନ୍ୟାସ ଲେଖିଲାବେଳେ—କିଏ ନଖାଇ ନପିଇ ତୁମ ପାଇଁ ଅପେକ୍ଷାକରି ବସିରହିଥାଏ ଗାଲରେ ହାତଦେଇ ଚୂଲିମୂଳରେ ? କେଉଁ ଗାଡ଼ିଚଲା 'ମନର ମଣିଷ' ତମର ସେ କରେ କାହିଁ ମ ?

ମୁଁ ହାତଯୋଡ଼ି ତତ୍‌କ୍ଷଣାତ୍ ସରଳ ଓ ଦ୍ରୁତ ଭାବରେ କହିଲି—ତୁମେ ଗୋପାଳଆ ବୋଉ—ତୁମେ ! କେଉଁ ପୁରୁଷାଧମ ଏ ସତ୍ୟକୁ ଅସ୍ୱୀକାର କରିବ ? ମୁଁ ଭୁଲିଯାଇଥିଲି—ଘରର ମଣିଷ କବିକୁ ବଞ୍ଚାଏ—କବିତା ଖାତାକୁ ବଞ୍ଚାଏ—କିନ୍ତୁ—କିନ୍ତୁ—କିନ୍ତୁ ବଞ୍ଚାଏ—ମାନେ···ମାନେ ଅର୍ଥାତ୍—ଯଦିଓ—ଅର୍ଥାତ୍······

ଘରଣୀ ନିଜ କପାଳରେ କରାଘାତ କରି କହିଲେ—ହାଉ ! ତୁମ 'ମନର ମଣିଷ' ମୁଁ ହିଁ ନୁହେଁ—ତୁମ ମନରେ······

ସେ କଣ କହୁଥାନ୍ତେ କେଜାଣି—ମୁଁ କିନ୍ତୁ ପୁନର୍ବାର ସରଳ ଆଉ ଦୃଢ଼ ଭାବରେ କହିଲି—ଧୂଆଁ, ଗୋପାଳଆ ବୋଉ | ଧୂଆଁ । ମୋ 'ମନର ମଣିଷ' ମୁହଁରେ ଧୂଆଁ— ମୋ ମନରେ ଧୂଆଁ । ମୁଁ ମାନୁଛି । କିନ୍ତୁ ତୁମେ କେବଳ ଧୂଆଁକୁ ଦେଖି ଏମିତି ଡରୁଛ କାହିଁକି ? ବରଫରୁ ବି ତ ଧୂଆଁ ବାହାରେ !! କିନ୍ତୁ— ତୁମେ ଯେ ମୋର 'ମନର ମଣିଷ' ଗୋପାଳଆ ବୋଉ—ଏହି ପୁରାତନ ସତ୍ୟକୁ ମୁଁ ଆଉ କେତେଥର ଜୀବନରେ ଉଚ୍ଚାରଣ କରିବି ?

ଘରଣୀ ମୁହଁ ମୋଡ଼ି କହିଲେ—ରଖ—ରଖ ସେ ସୁଆଗିଆ କଥା । ଆମର ସେ ଯୋଗ୍ୟତା ପୁଣି କାହିଁ ଲୋ ମାଆ ? ? ତୁମର 'ମନର ମଣିଷ' ଗୋପରେ ବଢ଼ୁଛି ।

ବନ୍ଧୁଙ୍କୁ ଲକ୍ଷ୍ୟକରି ମୁଁ କହିଲି—ବୁଝିଲ ବନ୍ଧୁ, ସେଇ ହେଉଛି ଯଥାର୍ଥରେ ତୁମର 'ମନର ମଣିଷ'—ଯେ ନିଜେ ଏକଥା ଜାଣିନାହିଁ ଓ ଜଣାଇଲେ ମଧ୍ୟ ବିଶ୍ୱାସ କରେନାହିଁ ।

ଘରଣୀ ଭିତରକୁ ଚାଲିଗଲେ । ଏଇ ଅବସରରେ ବନ୍ଧୁ ଜଣକ କହିଲେ—ଆଚ୍ଛା—ଏ ସ୍ତ୍ରୀଲୋକଗୁଡ଼ାଙ୍କର କ'ଣ 'ମନର ମଣିଷ' ନାହିଁ ?

ମୁଁ ହାତଯୋଡ଼ି ବିନୀତ ହୋଇ ସ୍ୱୀକାର କଲି—ରକ୍ଷାକର ଭାଇ ! ସେକଥା—'ଦେବାଃ ନ ଜାନନ୍ତି—କୁତଃ ମନୁଷ୍ୟାଃ ।'

□□□

